ଓଡ଼ିଶା ଶିକ୍ଷା ବିଭାଗୀୟ ଡାଇରେକ୍ଟର ମହୋଦୟଙ୍କ ତା ୧୭ । ୫ । ୫୦ର
୧ ନମ୍ବର ନୋଟିସରେ ଦ୍ୱିତୀୟ ଶ୍ରେଣୀ, ପାଠ୍ୟ ନିର୍ବାଚିତ ।

# ସାହିତ୍ୟ ପାଠ

## ପ୍ରଥମ ଭାଗ

(ଦ୍ୱିତୀୟ ଶ୍ରେଣୀ ନିମିତ୍ତ)

[illegible] ଦାସ ଏମ୍. ଏ.

[illegible] ସଂସ୍କରଣ

ପ୍ରକାଶକ

ଶ୍ରୀ [illegible] ଚରଣ ମହାନ୍ତି ପ୍ରୋପ୍ରାଇଟର,
କଟକ ପ୍ରିଣ୍ଟିଙ୍ଗ୍ ହାଉସ
ପୁସ୍ତକ ପୋଃ ଅଃ [illegible] ଚୌକ, କଟକ

୧୯୫୦

ମୂଲ୍ୟ [illegible]
ଅଠର [illegible] ଅଣା

# ସରସ ପାଠ

## ପ୍ରଥମ ଭାଗ



-ମହାତ୍ମା ଗାନ୍ଧି



ମହାତ୍ମା ଗାନ୍ଧିଙ୍କ କଥା ଥିବ ତ ଶୁଣି,
ହରିଜନ ପାଇଁ ତାଙ୍କ କେତେ ଖଟିଲେଣି;
କହୁଥିଲେ ସେହୁ ପରି
ବୁଲି ଏ ଭାରତ ସାରା,
ହିନ୍ଦୁଙ୍କୁ ବୁଝାଉଛନ୍ତି ଅଛୁଆଁ ବୋଲି,
ଜାତି ଯିବ ଧର୍ମ ବୋଲି ଅଧର୍ମ ଖାଲି।

ଏହୁ କାମେ ଆସିଥିଲେ ନସ ଘୃଣ୍ୟଧାମେ,
ଯାଦେ ଗୃଲି ବୁଲିଥିଲେ ଗ୍ରାମକୁ ଗ୍ରାମେ;
କଣ୍ଟାବଣେ ଦୁଙ୍କାଡ଼ିଲେ
କେତେ ସୁଖେ ଶୋଇଥିଲେ;
ଖଟ ଦେଲେ କହୁଥିଲେ କା ଲୋଡ଼ା ଏହି ?
ହଂସାରେ ଏଟାକୁ କେହି ଆହିବେ ନାହିଁ ।
ଦିନେ ଅମ୍ବଗଛ ତଳେ ଗୃହିଁ ସନ୍ଧରେ
ଦେଖିଲେ କ୍ରୁଦ୍ଧ ମେଣ୍ଢୀଏ ଯାଉଛି ଦୂରେ
ଚିହ୍ନିଛି କେ ତସ୍ କନା
ଗୋଡ଼ ଘଟେଉ କେତେ ଅନା;
ବୋଇଲେ ପାଖକୁ ଡାକ ଗାନ୍ଧି ତା ଗୃହ
ଖଦଡ଼ ଯୋଡ଼ିଏ ତାକୁ ଦେଲେ ପିନ୍ଧାଇ ।
ନିଲଙ୍କୁ ଦେଖିଲେ ତାଙ୍କ କେତେ ଶରଧା
କେତେ କାନ୍ଧୁଥିଲା ତାଙ୍କୁ ଗରବ ବାଧା,
କାହିଁ ବଡ଼ି ମନ୍ଦୁତିରେ
ଲୋକେ ପଡ଼ିଲେ ଅକାଳେ,
ଗାନ୍ଧି ଥିଲେ ସବୁବେଳେ ବନ୍ଧୁ ଭରସା,
ନାସ୍ତୋଟେ ଏକା ସେନ୍ତୁ ସଭିଙ୍କ ଆଶା ।
ଏ ଭାରତ ଥିଲା ପରା ଇଂରେଜ ଦେଶ,
ସେନା ଥିଲେ ଇଂରେଜଙ୍କ ନକତେ ସାହସ;
ଏକାକନ୍ଦା ଗାନ୍ଧୀଙ୍କର
କାହିଁ ଡ୍ରିଲେ ସେନାବଳ,
ଯେଉଁଥା ଦେଶ ଛାଡ଼ି ହେଉ 'ଗ୍ଲଡ଼ ଘର'
ଥାପିଟଲେ ଜାକଧର୍ମ ସାରା ଜଗତ.

ଭାରତ ସ୍ୱାଧୀନ ହେଲା ଅହିଂସା ବଳେ,
ସେହି ଅହିଂସାର ଧ୍ୱଜା ଜଗତେ ଉଡ଼େ।
ହେଉ ଯେ ଦେଶ ହେଉ ତାର
ନ ରହିବ ସେନାବଳ,
ଗରବୀ ନୋହିବ ଧର୍ମ ସାଇତା ଧନେ,
ଗାନ୍ଧି ଗାନ୍ଧି ସୁମନ୍ତ୍ର ଜଗତ ଜନେ।

ପ୍ରଶ୍ନ

୧। ମହାତ୍ମା ଗାନ୍ଧି ହରିଜନଙ୍କ ପାଇଁ କଣ କରୁଥିଲେ?
୨। ଗରିବଙ୍କ କଥା ତାଙ୍କୁ କିପରି ବାଧୁଥିଲା, ବୁଝାଅ।
୩। ଭୁଲେଣି, ଶରଧା, ସାଗୁ, କୋତରା, ଅହିଂସା, ଧ୍ୱଜା, ସ୍ୱାଧୀନ, ସାଇତା—ଲଗାଇ ବାକ୍ୟ ରଚନା କର।

---

## କାହାର ବଳ ବେଶି ?

ପାହାଡ଼ତଳ ବଣ ଭିତରେ ଗୋଟାଏ ନଈ। ନଈଟି ଓସାରିଆ; ସେଥିରେ ବର୍ଷସାରା ପାଣି ଥାଏ, ସୁଅ ହେଉଥାଏ। ନଈ କୂଳଟିର ଖଣ୍ଡେ ଖଣ୍ଡେ ପଥର ଅଧେ ଅଧେ ଉପରକୁ ଦିଶୁଥାଏ।

ଗୋଟିଏ ବିଲୁଆ ବଣରୁ ଆସି ନଈ ସେହି ପଥର ଉପରେ ବସେ। ପଥର ପାଖେ ଗୋଟିଏ କୁମ୍ଭୀର ବସା କରି ରହୁଥାଏ। କୁମ୍ଭୀରଟି ଭାରି ବଡ଼। ତା ମୁଣ୍ଡ ଗୋଟାଏ ପାଞ୍ଚ ଗଜିଣିଆ ବେତା ପରି। ବିଲୁଆ ତାକୁ ଦେଖି ଅତି ଡରୁଥିଲା। କ୍ରମେ ଦୁହେଁ କଥାବାର୍ତ୍ତା ହେଲେ ଓ ହାଙ୍ଗ ମୁଖ ହୋଇଗଲେ; ସଙ୍ଗାତ ବସିଲେ।

ବିଲୁଆ ନିତି ଆସି ଘଡ଼ିଏ କଥାବାର୍ତ୍ତା ହୋଇ ଚାଲିଯାଏ। ଦିନେ ବିଲୁଆ ଭାବିଲା, କୁମ୍ଭୀର ତାକୁ ନିର୍ବୁଦ୍ଧିଆ ବୋଲି ଭାବୁଛି;

ସେତେ ଖାତର କରୁ ନାହିଁ । ଦେହରେ ବଳ ନ ଥିଲେ କଷ୍ଟ ହେବ; ବାଲୁଆର ବୁଦ୍ଧି ଅଛି । କୁମ୍ଭୀର ତ ସେତେ ବୁଦ୍ଧିଆ ନୁହେ ।

ବାଲୁଆ ଦେଖିଲା, ସେହି ବଣକୁ ବେଳେ ବେଳେ ଗୋଟାଏ ହାତୀ ଆସୁଛି । ସେ ହାତୀ ସାଙ୍ଗେ କଥାବାର୍ତ୍ତା ହୋଇ ତା ସଙ୍ଗେ ମିତ ବସିଲା; ହାତୀକୁ କହିଲା, "ମିତ, ତମର ଆମର ଭିତରେ ବଳ କଷାକଷି ହେବା ।" ହାତୀ ହସିଲା । କିନ୍ତୁ ବାଲୁଆ ଛାଡ଼ିଲା ନାହିଁ । ଶେଷରେ ହାତୀ କହିଲା, 'ହଉ ହେଉ ।'

ସେ ଦିନ ମଙ୍ଗଳବାର । କଥା ହେଲା, ଆସନ୍ତା ଗୁରୁବାର ଦୁହେଁ ବଳ କଷାକଷି ହେବେ । ଗୋଟିଏ ଲମ୍ବା ଦମ୍ଭ ଦଉଡ଼ି ଅସିବ । ତାର ଗୋଟାଏ ମୁଣ୍ଡ ହାତୀ ଥୋଡ଼ଗୁଣ୍ଡାରେ ଗୁଡ଼ାଇ ଧରିବ । ତା ଏରେ ବାଲୁଆ ଯାଇ ଦୂରରେ ଆର ମୁଣ୍ଡ ଧରିବ । ଦୁହେଁ ଟଣାଟଣି ହେବେ । ଯେ କର୍ଷାକାର ହୋଇ ଆସିବ, ସେ ହାରିଲା ବୋଲି ଜଣାଯିବ । ନ ହେଲେ ସନ୍ଧ୍ୟାକୁ ସେ ଦିନ ଦଉଡ଼ି ଛାଡ଼ି ଦେଇ ଯେଝା ଘରକୁ ଫିରିବେ । ପରେ ପାହିଲେ ପୁଣି ଦେଖା ହେବ ।

ହାତୀ ସାଙ୍ଗେ ଏହିପରି କଥା କରି ସାରି ବାଲୁଆ କୁମ୍ଭୀର ପାଖକୁ ଗଲା । ତାକୁ କହିଲା, "ସାଙ୍ଗାତ, ଆମେ ବଳ କଷାକଷି ହେବା ।" କୁମ୍ଭୀର ବ ଆଶ୍ଚର୍ଯ୍ୟ ହୋଇଗଲା । ବାଲୁଆ କି ଆଉ ଛାଡ଼ନ୍ତି । କୁମ୍ଭୀର ସାଙ୍ଗେ ସେହିପରି କଥା ହେଲା । କୁମ୍ଭୀର ବି ଦଉଡ଼ିର ଗୋଟାଏ ମୁଣ୍ଡ ଧରି ଟାଣିବାକୁ ରାଜି ହେଲା ।

ବାଲୁଆ ବୁଧବାର ଦିନଯାକ ଲାଗି ଗୋଟାଏ ବଡ଼ ଟାଣୁଆ ଲମ୍ବା ଦଉଡ଼ି ଯୋଗାଡ଼ କଲା । ତାର ଗୋଟାଏ ମୁଣ୍ଡ ନଈକୂଳେ; ପୁଣି ଆର ମୁଣ୍ଡଟା ଦୂରରେ ବଣ ଭିତରେ ପକାଇ ଦେଲା । ଗୁରୁବାର ସକାଳୁ ଆସି କୁମ୍ଭୀରକୁ କହିଲା, "ଚାଲ, ଦଉଡ଼ି ଥୋଇଛି;

ଖାଇଦେବା । ତୁମେ ଦଉଡ଼ି ଧରିଲେ ମୁଁ ଯାଇ ଆର ମୁଣ୍ଡ ଧରିବି । ମୁଁ ଡାକ ଦେଲେ ତୁମେ ଟାଣିବ ।” ହାତୀକୁ ଭେଟି ମଧ୍ୟ ଠିକ୍ ସେହି କଥା କହିଲା ।

ଦୁଇ ପହରକୁ ସମସ୍ତେ ସଜବାଜ ହୋଇ ଆସିଲେ । ବିଲୁଅ ଦଉଡ଼ିର ଗୋଟାଏ ମୁଣ୍ଡ ହାତୀକୁ ଧରାଇ ଦେଇ ଆର ମୁଣ୍ଡଟି କୁମ୍ଭୀରକୁ ଦେଲା । ଆପେ କିଛିଦୂର ଆସି ବଣ ଭିତରେ ଲୁଚି ଯାଇ ଗୋଟାଏ କୁହାଟ ଛାଡ଼ିଲା । ଦୁହେଁ ଦଉଡ଼ିକୁ ଟାଣିଲେ । କେହି



କାହାକୁ ଘୋଷାରି ନେଇ ପାରୁନାହାନ୍ତି । ସନ୍ଧ୍ୟା ହୋଇଗଲା । ଦଉଡ଼ି ଛାଡ଼ି ଦୁହେଁ ଯେଝା ଘରକୁ ଗଲେ । ଦୁହେଁ ମନେ ମନେ ବିଚାରିଲେ, “ଓହୋ, ବିଲୁଅ କେଡ଼େ ବଳୁଆ ସତେ ।”

ଶୁକବାର ସକାଳୁ ବିଲୁଅ ସଙ୍ଗାତକୁ ଦେଖିଲା । ପୁଣି ଯାଇ ମିତଙ୍କୁ ଦେଖିଲା । ଦୁହେଁ [illegible] ହସି ନହେଲେ । ବିଲୁଅକୁ ତେଣିକି ଖାତିର କଲେ; କଅଣ କହିବା ।

## ପ୍ରଶ୍ନ

୧ । ହାତୀ ଓ କୁମ୍ଭୀର ସଙ୍ଗେ ଲଢ଼ିବାକୁ ଶିଆଳ କାହିଁକି କହିଲା ? ଲଢ଼େଇ କାହା କାହା ଭିତରେ ହେଲା ?

୨ । ଏ ଫିକର କରିବାରେ ଶିଆଳର କି ଉପକାର ହେଲା ?

୩ । ନିମ୍ନଲିଖିତ ଶବ୍ଦମାନ ଏ ପାଠରେ କେଉଁଠି ଅଛି, କହ । ଓସାରିଆ, ବେଲା, ନାକଫୁଆ, ଦମ୍ଭ, ସଅଳ, ପେଜବାଜ ।

---

## ଛତା

ଖରା ବର୍ଷାରୁ ରକ୍ଷା ପାଇବା ପାଇଁ ଆମ ଦେଶର ଲୋକେ ଆଗେ ତାଳପତ୍ର ଛତା ବ୍ୟବହାର କରୁଥିଲେ । ଗୁଆ ବରଡ଼ାରେ ମଧ୍ୟ ଛତା ହେଉଥିଲା । ବାଉଁଶକୁ ଖଣ୍ଡିକା ପରି ଚିରି ସେଥିରେ ଛତାର ଗୋଟିଏ ଗୁଣ୍ଡି କରନ୍ତି, ତା ପରେ ଖଞ୍ଜି କରି ପତ୍ର ଉପର କରି ଦିଅନ୍ତି । ମଝିରେ ଗୋଟିଏ ଦେଣ୍ଟ ଲଗାଇ ଦିଅନ୍ତି । ଦେଣ୍ଟଟି ଖଣ୍ଡେ ଲମ୍ବ ବାଉଁଶ । ସେଇଟିର ମୋଟା ପାଖଟି ଗୋଲ ଚଳୁଡ଼ା ହୋଇ ଛତା ଗୁଣ୍ଡି ମଝିରେ ଲଗା ହୋଇଥାଏ ।

ଦେଣ୍ଟ ଓ ଗୁଣ୍ଡି ନ ଥାଇ ପଖିଆ ମଧ୍ୟ ପ୍ରସ୍ତୁତ ହୁଏ । ପଖିଆ ମୁଣ୍ଡରେ ଦେଲେ ଚଉଠିଏ ପଖ ପରି ପିଠି ଉପରେ ପଡ଼େ । ପତ୍ରକୁ ଦୁଇ ସ୍ତରରେ ସିଲେଇ କରି ପଖିଆ କରନ୍ତି । ବାଉଁଶକୁ ପାତିଆ କରି ବୁଣି ସାହେବି ଟୋପି ପରି ମଧ୍ୟ ଗୋଜିଆ ଓ ଗୋଲ ପଟକୁ ଓସାର କରି ତିଆରି କରନ୍ତି । ଗୁଆ ବରଡ଼ାରେ ବି ତିଆରି ହୁଏ ।

କନାରେ ମଧ୍ୟ ଏ ଦେଶରେ ଛତା ହେଉଥିଲା । ଏହାକୁ ଛତି କହନ୍ତି । ଧଉଳ କମ୍ପା ରଙ୍ଗ ବର୍ଣ୍ଣର କନାରେ ତିଆରି ହେଲେ ଏହା ବାହାରେ

ଏହା ସାଧାରଣ ଛତାରୁ ଖୁବ୍ ବଡ଼ । ଏଥିରେ ଗୋଟାଏ ମୋଟା ବେଣ୍ଟ ଥାଏ । ସେହି ବେଣ୍ଟର ଉପର ମୁଣ୍ଡରେ ଲମ୍ବା ଲମ୍ବା ସମାନ ସମାନ ବାଉଁଶ କାଠି ଖଞ୍ଜା ହୋଇ ଛଉଁ ହୁଏ । ସେଥିରେ ଭଲ ଉପର ଭୁଇ ଏଟେ କନା ଛପର ହୁଏ । ଏହି ଛତ ବୁଜା ହୁଏ, ଫିଟାଇହୁଏ ।

ଏହି ଛତ ପର୍ ସାନ ସାନ ଛତା ହୁଏ । ଚୀନ ଦେଶରେ ଏହି ସାନ ଛତା ବହୁ ପୂର୍ବକାଳରୁ ଚଳୁଅଛି । ଇଉରୋପରେ ଆଗେ ଏପର ଛତା ନ ଥିଲା; କେହି ଦେଖି ନ ଥିଲେ, କି ଜାଣି ନ ଥିଲେ ।



ଆଜକୁ ପ୍ରାୟ ଦୁଇଶହ ବର୍ଷ ତଳେ ଜୋନସ୍ ହାନୋୱେ ବୋଲି ଜଣେ ଇଂରେଜ, ପ୍ରଥମେ ଚୀନ ଦେଶରୁ ଖଣ୍ଡେ ଛତା ଲଣ୍ଡନକୁ ନେଇଥିଲେ । ସେ ଛତା ଟାଣି ରାସ୍ତାରେ ଗଲାବେଳେ ଲୋକେ 'ଭଅଣ୍ଟାଏ' ବୋଲି ବାଗୁର, ଠେକା ପକାଇ ଛତାଟି ଭାଙ୍ଗିଦେଲେ । ମରହଟ୍ଟ ଲୋକେ ସବୁଠି ଏଥର କରନ୍ତି ।

କେତେକାଳ ପରେ ମୁଣି ସେଠା ଲୋକେ ବୁଝିଗଲେ, ଛତା ଭେଙ୍କେ ଦରକାର । ଲୁହା ଗୁଣ ଓ କାଠ, ବାଉଁଶ କେଣ୍ଟରେ

ପ୍ରଥମେ କନା ଛପର ଛବି ଛତା ତିଆରି କଲେ । ସେହି ଛତା ପ୍ରଥମେ ଇଂଲଣ୍ଡରୁ ଆମ ଦେଶକୁ ଆସିଲା । ଏହି ଛତାର କନା କଳା । ପାଣି ନ ଗଳିବା ପାଇଁ ଏହି କନା ଉପରେ ଗୋଟିଏ ଚିକ୍କଣ ଜିନିଷ ବୋଳା ହୋଇଥାଏ । ଏହି ଚିକ୍କଣ ଜିନିଷଟି ମହଣ ପରି । ତେଣୁ ଆମେ ସେ ଛତାକୁ କହୁଁ, ମହଣ ଛତା ବା ମହଣି ଛତା । ଏବେ କିନ୍ତୁ ମହଣ କନା ଛଡ଼ା ଆଉ କେତେ ପ୍ରକାର କନା ଛତାରେ ଲାଗିଲାଣି । ରେଶମ କନା ବା ନକଲି ରେଶମ କନାରେ ଏବେ ବହୁତ ଛତା ତିଆରି ହେଉଅଛି । ଏହା ଏ ଦେଶରେ ମଧ୍ୟ ବେଶି ତିଆରି ହେଉଅଛି । ଛତାକୁ ଫିଟାଇବା ଓ ବୁଜିବା ପାଇଁ କେତେ ପ୍ରକାର କଳ ହୋଇଗଲାଣି ।

### ପ୍ରଶ୍ନ

୧ । ତାଳପତ୍ର ଛତା କିପରି ତିଆରି ହୁଏ । ପଟିଆ, ଝାମ୍ପି ପ୍ରଭୃତି କେଉଁମାନେ ବ୍ୟବହାର କରନ୍ତି ? କନାଛତା ପଟିଆ ପରି ବ୍ୟବହୃତ ହୁଏ କି ନାହିଁ ? ଆଜିକାଲି ତାଳପତ୍ର ଛତା ବେଶି ବ୍ୟବହାର ହେଉ ନାହିଁ କାହିଁକି ?

୨ । ନିମ୍ନଲିଖିତ କେଉଁ କେଉଁ ଶବ୍ଦ ଏ ପାଠରେ ଅଛି :— ଖଡ଼କା, ଛାଇ, କାଠି, ଶିକୁଡ଼ା, ଫାଳ, ବରଡ଼ା, ଠାକୁର ।

---

## ଗୁରୁ ଶିଷ୍ୟ

ପ୍ରାୟ ଶହେ ବର୍ଷ ତଳର କଥା । ଜର୍ମାନୀ ଦେଶର ଗୋଟିଏ ବିଦ୍ୟାଳୟରେ ଏହା ଘଟିଥିଲା ।

ଶ୍ରେଣୀ ଭିତରକୁ ଶିକ୍ଷକ ପ୍ରବେଶ କଲେ ପିଲାଏ ମୁଣ୍ଡ ନୁଆଁଇ ପ୍ରଣାମ କରନ୍ତି । ଜର୍ମାନୀରେ ମଧ୍ୟ ପୂର୍ବେ ସେହି ବିଧି ଥିଲା । ମାତ୍ର

ସେ ବିଦ୍ୟାଳୟର ଜଣେ ଶିକ୍ଷକ ଶ୍ରେଣୀକୁ ଆସୁ ଆସୁ ସେହି ଅଭ୍ଭୁତ ଗୁଡ଼ିକ ମୁଣ୍ଡ ନୁଆଇଁ ପିଲାଙ୍କୁ ପ୍ରଣାମ କରି ଘର ଭିତରେ ପଶନ୍ତି । ପିଲାଏ କେବେ ହେଲେ ଆଗ ପ୍ରଣାମ କରି ପାରନ୍ତି ନାହିଁ ।

ଏହିପରି ନିତି ହୁଏ । ଦିନେ ଶିକ୍ଷକ ପ୍ରଣାମ କରି ପଶିଆସି ଚଉକିରେ ବସିଲା ଉତ୍ତାରୁ ଗୋଟିଏ ପିଲା ଠିଆ ହୋଇ ପଚାରିଲା, "ମହାଶୟ, ଏ କି କଥା ? ଆମେ ଆପଣଙ୍କ ଛାତ୍ର । ଆମର ଆପଣଙ୍କୁ ପ୍ରଣାମ ଜଣାଇବାର କଥା । ଆମେ ତାହା କରୁ କରୁ ଆପଣ ଆଗରୁ ମୁଣ୍ଡ ନୁଆଇଁ ନତ ଆମକୁ ଆଗ ପ୍ରଣାମ କରି ପକାଉଛନ୍ତି । ଏ ତ ଭଲ ହେଉ ନାହିଁ ।"

ସେ ପିଲାଟିକୁ ଚାହିଁ ଶିକ୍ଷକଙ୍କ ଆଖି ଛଳ ଛଳ ହୋଇଗଲା । ଶିକ୍ଷକ କହିଲେ, "ବାବୁ, ତୁମେ ବୁଝିପାରୁନାହିଁ । ଆମେ ପଢି ଶୁଣି ତୁମର ଶିକ୍ଷକ ହୋଇଛୁ । ଭଗବାନ ତୁମକୁ ଆମ ହାତରେ ଦେଇଛନ୍ତି । ଆମେ ତୁମକୁ ମଣିଷ କରିବୁ ଏ ଆମର ବଡ଼ ଭାଗ୍ୟ । କିନ୍ତୁ ଆମେ ଯାହା ହେବାର ହୋଇ ସାରିଛୁ । ତୁମେ ସବୁ କଅଣ ହେବ, କିଏ ଜାଣେ ? ତୁମ ଭିତରେ କିଏ ବୁଦ୍ଧ, ଯୀଶୁଖ୍ରୀଷ୍ଟଙ୍କ ପରି ଲୋକ ଥାଇପାରେ । ମୁଁ ଏହିକଥା ଭାବି ତୁମକୁ ନମସ୍କାର କରେ । ତୁମକୁ ଦେଖିଲେ ମୁଁ ଭାବେ, ତୁମ ଭିତରେ କେତେ ବଡ଼ ବଡ଼ ମଣିଷ ସବୁ ଥାଇ ପାରନ୍ତି ।"

ବୁଝିପାରୁଥିବ, ସେ କେଡ଼େ ଭଲ ଶିକ୍ଷକ । ସେହି ଦିନଠାରୁ ପିଲାମାନେ ତାଙ୍କ ଦେବତା ପରି ମାନିଲେ ।

ଆଶ୍ଚର୍ଯ୍ୟର କଥା, ସେହି ବାଳକ ଶିଷ୍ୟଟି ଗୁରୁଙ୍କୁ ଏକଥା ପଚାରିଥିଲା, ସତକୁ ସତ ସେ ପରେ ଚୈତନ୍ୟ, ଶଙ୍କରାଚାର୍ଯ୍ୟଙ୍କ ପରି ଜଣେ ମହାପୁରୁଷ ହେଲେ । ଖ୍ରୀଷ୍ଟଧର୍ମର ଲୋକେ ତାଙ୍କୁ ଭଲ କରି ଜାଣନ୍ତି । ତାଙ୍କ ନାମ, 'ମାର୍ଟିନ୍ ଲୁଥର' ।

## ପ୍ରଶ୍ନ

୧ । ଏ ପାଠରେ ଯେଉଁ ଗୁରୁଙ୍କ କଥା ପଢ଼ିଲ, ସେ ଆଗରୁ ପିଲାଙ୍କୁ ପ୍ରଣାମ କରୁଥିଲେ କାହିଁକି । ତାଙ୍କ ଅନୁମାନ କଅଣ ଠିକ୍ ହେଲା ? କପରି ?

୨ । 'ଆଖି ଛଳ ଛଳ ହୋଇଗଲା'—ଏଥିରୁ ତୁମେ କଣ ବୁଝିଲ ?

---

## ପୁରୀ

ଇନ୍ଦୁ—ତୁ ଧଳା ଜିନଷଟାଏ କଅଣ ହାତରେ ଧରିଛୁ ?

ମଧୁ—ଏ ଗୋଟାଏ ଶିପ । ମୁଁ ପରା କାଲି ବାପାଙ୍କ ସାଙ୍ଗରେ ପୁରୀ ଯାଇଥିଲି । ସମୁଦ୍ର କୂଳରୁ ଏଭେଳି ଶିପ ଗୋଟାଇ ଆଣିଛି ।

ଇନ୍ଦୁ—ପୁରୀରେ ତୁମେ କଣ ସବୁ ଦେଖିଲ ?

ମଧୁ—ବଡ଼ ଦେଉଳ କଥା ତ ତୁ ଶୁଣିଥିବୁ । ପୁରୀ ଦେଉଳ ପ୍ରାୟ ୧୨୦ ହାତ ଉଚ୍ଚ ହେବ । କେଡ଼େ ବଡ଼ ଦେଉଳ ସେ ! ତା ଭିତରେ ଜଗନ୍ନାଥଙ୍କ ମୂର୍ତ୍ତି ଅଛି । ଜଗନ୍ନାଥଙ୍କ ମୁଣ୍ଡରେ ଗୋଟିଏ ହୀରା ଅଛି ଯେ ସେଇଟି ଅନ୍ଧାର ଘରେ ମଧ୍ୟ ଚକ ଚକ ଦିଶେ ।

ଇନ୍ଦୁ—ଦେଉଳଠୁ ତୁ ଆଉ କୁଆଡ଼େ ଯାଇଥିଲୁ ?

ମଧୁ—ସମୁଦ୍ର କୂଳକୁ ବାପାଙ୍କ ସାଙ୍ଗେ ବୁଲି ଯାଇଥିଲି ।

ଇନ୍ଦୁ—ସମୁଦ୍ର ଦେଉଳଠାରୁ କେତେ ବାଟ ? ସମୁଦ୍ର କୂଳକୁ କାହିଁକି ତୁମେ ବୁଲିଗଲ ।

ମଧୁ—ପୁରୀ ସମୁଦ୍ର କଥା କଣ ତୁ ଶୁଣି ନାହୁଁ । ସମୁଦ୍ର ଦେଉଳଠାରୁ ପ୍ରାୟ ମାଇଲିଏ ବାଟ ହେବ । ସମୁଦ୍ର କୂଳରେ ବଡ଼ ଭଲ ପବନ ବହେ । ସେ ପବନରେ

ବୁଲିଲେ ଅନେକ ରୋଗ ଭଲ ହୋଇଯାଏ । ଆଉ ବଡ଼ ବଡ଼ ଲହଡ଼ିମାନ ସବୁବେଳେ ଆସି ସମୁଦ୍ର କୂଳରେ ବାଡ଼େଇ ହୁଏ । ଏହି ଲହଡ଼ି ପାର ହୋଇ ନୋଳିଆ ସବୁ ଯାଇ ମାଛ ଧରି ଆଣନ୍ତି ।



ପୁରୀ ମନ୍ଦିର

ଇନ୍ଦୁ—ସମୁଦ୍ରରେ କଅଣ ଲୋକେ ଗାଧୋଉଛନ୍ତି ?

ମଧୁ—ସମୁଦ୍ରରେ ବହୁତ ଲୋକ ଗାଧୋଉଛନ୍ତି । ଗାଧୋଇଲା ବେଳେ ଲହଡ଼ି ଭାଙ୍ଗିବାକୁ ଭାରି ଖୁସି ଲାଗେ । ତୁ ଯେବେ ପୁରୀ ଗଲେ ସମୁଦ୍ରରେ ଯାଇ ଗାଧୋଇବୁ ।

ଇନ୍ଦୁ—ପୁରୀ କଅଣ ଆମର ଗାଁ ପରି ?

ମଧୁ—ନାହିଁ, ପୁରୀ ପରି ଗୋଟାଏ ସହର । ସେଠାରେ ବହୁତ କୋଠାଘର, ଦୋକାନ, ବଜାର ସବୁ ଅଛି । ଦେଉଳ ଦୁଆରେ ଗୋଟିଏ ବଡ଼ ରାସ୍ତା ଅଛି । ତାକୁ ବଡ଼ ଦାଣ୍ଡ କହନ୍ତି । ସେହି ଦାଣ୍ଡରେ ଗୁଣ୍ଡିଚା ଘର ସବୁ ମାଏ । ଏବେ ତ ପୁଣି ପୁରୀରେ ସବୁଆଡ଼େ ରାସ୍ତା ପାଖରେ ପାଣି କଳ ବସିଲାଣି, ବିଜୁଳିବତୀ ମଧ୍ୟ ଲାଗିଲାଣି ।

ଇନ୍ଦୁ—ଏ ରାସ୍ତା ସବୁ କିଏ ସଫା ସୁତୁରା କରି ରଖେ ।

ମଧୁ—ସହର ଲୋକେ ଗୋଟିଏ ମ୍ୟୁନିସିପାଲିଟି ଗଢ଼ିଛନ୍ତି । ସେହି ମ୍ୟୁନିସିପାଲିଟି ଲୋକଙ୍କଠାରୁ ଟିକସ ଆଦାୟ କରି ସହର ସଫା ସୁତୁରା କରି ରଖନ୍ତି । ଆମ ଗାଁରେ ସବୁ ବି ଅଳ୍ପ ଦିନରେ କେନ୍ଦ୍ରଘର ଗୋଟିଏ ଗୋଟିଏ ପଞ୍ଚାୟତ ବସିବ । ସେତେବେଳେ ଆମ ଗାଁ ଆଉ ଅଳିଆ ହେବନାହିଁ । ବହୁତ ସ୍କୁଲ ବସିବ, ଆଉ ଭଲ ଭଲ ରାସ୍ତା ହେବ । ଗାଁ ଲୋକଙ୍କର ବହୁତ ସୁବିଧା ହୋଇଯିବ ।

## ପ୍ରଶ୍ନ

୧ । ପୁରୀ କେଉଁଠି ? ସେଠାରେ ଦେଖିବା ଜିନିଷ କଅଣ ଅଛି ।

୨ । ମନ୍ଦିରର ତୁମ ବାପା ପୁରୀ ବାହାରିଲେ, ସେ କେଉଁ ବାଟେ କପରି ଯିବେ ? ତୁମ ଲାଗି କଅଣ ଆଣିବାକୁ ତୁମେ ତାଙ୍କୁ କହିବ ?

୩ । ଶ୍ରୀପ, ଲବଣ, ପାଣିକଳ, ଗୁଣ୍ଡିଚା, ସଫା ଓ ଅଳିଆ—ଏଗୁଡ଼ିକ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ରଚନା କର ।



# ଆମ 'ନେଡ'

ଆସ ଗୋ ବଉଳ ଅ-ରେ ଧବ
ଦେଖିବ ଆମ ନେଡ;
ଦେବ ମୁଁ, ଖାଇବ କଅଁଳ ଦୂବ
ଗୁଡ଼ିବ ସେ ମୋ ହାତ ।

ଆମ ନେଡ଼ ଗାଈ ଭେଡେ଼ ସୁନ୍ଦର,
ମୁଣ୍ଡରେ ଚନ୍ଦ, ଭଲା ଲାଙ୍ଗୁଡ଼
ଶିଙ୍ଗ ଦିଓଟି ଗଜା,
ଆସ ଗୋ ବଉଳ ଅରେ ଧବ
ଦେଖିବ ଯୋଉଠେ ମଜା ।

ଚରୁଥିବ ସେ ନଈ କୂଳେ,
ଘାସ ଖାଉଥିବ କୋଳି-ମୂଳେ
ମୁଁ କହିବ 'ରହ',
ମୁହଁକୁ ଟେକ କାନ ଡେର
ଗୁହିଁ ରହିବ ପିଲଟି ପର,
ନିଶ୍ୱାସ ମାରି ହୋଇ ଧୂସର
ସତେ ଯେମିତ ପଚାରୁ ଥିବ
'କଅଣ କହୁଛୁ କହ' ।

କଅଁଳ କର ଦେବି ମୁଁ କହି
"ମାଆଟି ମୋର, ଖାଇବୁ ନାହିଁ
ଝୋଟଲା ପତର ବସୁଣ ଘାସ;
ଘୂମୁରି କହିବ 'ହୁଁ',

ପାଖକୁ ଆସି          ରହିବ ଠାକ,
ମୁଣ୍ଡ ଉପରେ          ଦେବକୁ ଟେକ,
ଆଉଁସା ପାଇଁ          ମୁଣ୍ଡ ହଲାଇ
ବୋଲିବ, 'ମୋତେ ଛୁଅଁ' ।
ଟେକ ଚଳନ୍ତି          ଦେବି କୁଣ୍ଡାଇ
ଆଉଁସି ଦେବି          ମୁହଁଟି ମୁହଁ
ଦୋଳି ମୂଳୁଟି          ହେବୁ କେମିତ
ତା ଲେଜେ ବୁଲିବ ହାତ
ପାଟି ମେଲ୍ଲା କରି          ହାତ ପୁରାଇ
ଗଣିବି ମୁଁ ତା ଦାନ୍ତ ।
ଗୋଡ ସନ୍ଧିରେ          ମୁହଁ ଗଳାଇ
କୁରୁ କୁରୁ କରି          ପହ୍ନା ହଲାଇ
ଶର ଓଟାରି          ଦୁହିଁବି ଦୁଧ,
ମାରିବ ନାହିଁ ସେ ନାତ,
ଆସ ଗୋ ବଉଳ          ଆ-ରେ ହରି,
ଦେଖିବ ଆମ ନେତ;
ଦେବି ମୁଁ, ଖାଇବ          କଅଁଳ ଦୁବ,
ଚାଟିବ ସେ ମୋ ହାତ ।

ପ୍ରଶ୍ନ

୧ । ଏ ପଦ୍ୟଟି କିଏ ବୋଲୁଛି ? ଗାଈ କଅଣ ଖାଇବାକୁ ସୁଖ ପାଏ । ଦେହତଳ କୁଣ୍ଡାଇଦେଲେ ଗାଈ କଅଣ କରେ ?

୨ । ସୁନ୍ଦର, ଚୂନ, ଲଙ୍ଗୁଡ଼ ଓ ଖଜା—ଏ ଶବ୍ଦଗୁଡ଼ିକ ଥିବା ପଦଟି ମନରୁ କହୁଥାଅ ।

---

## ଚୋର ଧରାପଡ଼ିଲା

ଚୋରଙ୍କୁ ଜଗିବାକୁ ଚଉକିଆ ଅଛନ୍ତି । କିନ୍ତୁ ଜଣେ ଜଣେ ଚଉକିଦାର ନିଜେ ଚୋର ।

ଦିନେ ଗୋଟିଏ ଚୋର ଚଉକିଦାର ରାତିରେ ଜଣକ ଘରେ ଚୋରି କରିବାକୁ ପଶିଲା । ସେ ଦିନ ସେ ଲୋକ ଘରକୁ ଜଣେ ବ୍ରାହ୍ମଣ ଆସିଥିଲେ । ଖରାଦିନ; ବ୍ରାହ୍ମଣ ଖାଇସାରି ଅଗଣାରେ ମସିଣା ପକାଇ ଶୋଇଛନ୍ତି । ରାତି ଅଧ ହେଲାଣି ସତ, ମାତ୍ର ବ୍ରାହ୍ମଣଙ୍କୁ ନିଦ ଲାଗିନାହିଁ । ସେ ଖାଲି ଆଖି ବୁଜି ପଡ଼ିଛନ୍ତି ।

ବ୍ରାହ୍ମଣ ଚୋର ପଶିବାର ଜାଣିଲେ; ଭାବିଲେ "ମୁଁ ଜାଣୁ ଜାଣୁ ଯା ଘରୁ ଚୋରି ଯିବ । ନା, ମୁଁ ଏ ଚୋରକୁ ଧରିବି; ଡାକ ପକାଇବି । ଯାହାହେବ ହେଉ"



ଏହା ଭାବି, ସେ ଚୋରକୁ ଜାକିଠି ମାରି ଧରି 'ଚୋର, ଚୋର' ବୋଲି ପାଟିକଲେ । ଚୋରଟି ବି ଡରିଗଲା ନାହିଁ । ସେ ବ୍ରାହ୍ମଣଙ୍କୁ ସେହିପରି ଅଣ୍ଟାରେ ଧରି 'ଚୋର, ଚୋର' ବୋଲି ଡାକ ପକାଇଲା ।

ସମସ୍ତେ ଜମା ହୋଇଗଲେ । ଦୁହେଁ ଧରା ହୋଇ ହାକିମଙ୍କୁ ଗଲେ । ଚୋର ଧରିବା ତ ଚଉକିଆର କାମ ! ଏଣେ ପୁଣି ବ୍ରାହ୍ମଣ କହୁଅଛି,'ଚଉକିଆ ଆପେ ଚୋର' ହାକିମ ବିଚାର କରିବେ କିଅଣ ? ସାକ୍ଷୀ, ନା ଗୁହା, କିଅଣ ଅଛି ?

କିନ୍ତୁ କଥାଟା ନ ଧରି ଛାଡ଼ି ଦେବାକୁ ହାକିମଙ୍କ ମନ ହେଲା ନାହିଁ । ସେ ଦୁଇ ଅସାମୀଙ୍କୁ ଜେଲରେ ରଖି ମକଦ୍ଦମା ତାରିଖ-କରିଦେଲେ ।

ଦୁଇଟି ଯାକ ଅସାମୀ ଜେଲରେ ଥାଆନ୍ତି । ଦିନେ ଜେଲ ବାବୁ ତାଙ୍କୁ ଡାକି କହିଲେ, "ଦେଖ, ସେଠାରେ ଗୋଟାଏ ମୁର୍ଦ୍ଦାର କୋଠରିରେ ବନ୍ଦୀ ହୋଇ ଥୁଆ ହୋଇଛି । ତାକୁ ତୁମେ ଦୁହେଁ ଶ୍ମଶାନକୁ ନେଇଯାଅ ।"

ବିଚରା ଅସାମୀ କିଅଣ କରିବେ ? ମୁର୍ଦ୍ଦାରକୁ କାନ୍ଧରେ ଧରି ବାଟେ ବାଟେ ଚାଲିଲେ । ଜେଲ ସିପାହୀମାନେ ଖଣ୍ଡେ ଦୂର ପଛରେ ଓ ଆଗରେ ଯାଉ ଥାଆନ୍ତି । ବାଟରେ ବ୍ରାହ୍ମଣଟି କହିଲା "କି ପାପ କରିଥିଲି ! ଚୋରକୁ ଧରିବାକୁ ଯାଇ ମୋର ଏ ଦଶା ଘଟିଲା । ଶବ ଛୁଇଁଲି; ଟିକିଏ ଗାଧୋଇ ନିତ୍ୟକର୍ମ କରିବାର ବି ସୁବିଧା ନାହିଁ । ଯାଉ, ଯାହା ଭାଗ୍ୟରେ ଅଛି, ଘଟିବ ।"

ଚଉକିଆଟି ଖୁସି । ସେ କହିଲା, "ଅଗଣାରେ ତ ଶୋଇଥିଲ, ମୋତେ ଧରିବାକୁ ଗଲ କାହିଁକି ? କି ହେବ,ଅଡମ-ପୁଲିସ ଜାଣିଛି କି ? ଆମେ ଯାହାକୁ ଧରିବୁ ସେ ଚୋର । ଆମେ ଚୋରକଲେ ଧରିବ କିଏ ? ଏବେ ଦେଖିବୁ, ହାକିମ ମୋତେ ଛାଡ଼ି ଦେବେ । ତୋତେ ଚୋର ବୋଲି ଦଣ୍ଡ ଦେବେ । ଜେଲ ଖଟିବୁ ! ମୁଁ ଖଲାସ ହୋଇ ଆନନ୍ଦରେ ଚାଲିଯିବି ।"

ପୁଲିସମାନେ ବାଟ ହରାଇ ଶ୍ମଶାନ ବୋଲି ଯେଉଁଠାକୁ ନେଲେ, ଖଟଟି ସେଠାରେ ଥୁଆ ହେଲା । ସଙ୍ଗେ ସଙ୍ଗେ ସେ ଶବ ମୁହଁରୁ ଲୁଗା କାଢ଼ି ଦେଇ ଉଠି ବସିଲା ।

ସେଠି ମୂର୍ଦ୍ଧାର ନୂତନ ହାକିମ ସାକ୍ଷୀ କରିବା ପାଇଁ ଗୋଟିଏ ଲୋକଙ୍କୁ ସେହିପରି କରାଇଥିଲେ ।

କିନ୍ତୁ ଅଡ଼ଧନ ମଦ୍ଧ୍ୟମା ବାହାର ହେଲା । ଯେ ମୂର୍ଦ୍ଧାର ହୋଇ ଥିଲା, ସେ ସାକ୍ଷୀ ଦେଇ, ଯାହା କଥାବାର୍ତ୍ତା ଶୁଣିଥିଲା, ସବୁ କହିଗଲା । ଚଉକିଆ ଅଉ କହିବ କଅଣ ? ସେ ଚୋର ବୋଲି ସଫା ଜଣା ପଡ଼ିଲା । ହାକିମ ତାକୁ ଦଣ୍ଡ ଦେଲେ । ବ୍ରାହ୍ମଣ ଖଲାସ ହୋଇ ଘରକୁ ଗଲା ।

### ପ୍ରଶ୍ନ

୧ । ବ୍ରାହ୍ମଣ ଚଉକିଆକୁ କୁଣ୍ଢାଇ ଧରିବାରୁ ସେ ଡରିଗଲା କାହିଁକି ? ଚଉକିଆର କେଉଁ କଥାରୁ ସେ ନିଜେ ଚୋର ବୋଲି ଜଣା ପଡ଼ିଲା ? ଜୀଅନ୍ତା ମଣିଷଟା କୋକେଇରେ ବନ୍ଧା ହୋଇ ଶ୍ମଶାନକୁ ଯାଇଥିଲା କାହିଁକି ?

୨ । ସବୁ ପିଲା ମିଶି ଏ ଗଳ୍ପଟି ଅଭିନୟ କର ।

---

## ରେଲଗାଡ଼ି

ସମସ୍ତେ ରେଲଗାଡ଼ି ନାମ ଶୁଣିଛ । ଏହା ଭାରି ବେଗରେ ଯାଏ । ଆଗେ ଲୋକେ ଗୃଳିକର ବା ବଳଦ ଗାଡ଼ିରେ ମାସକେ ଯେତିକି ବାଟ ଯାଉଥିଲେ, ଏବେ ଦିନକେ ରେଲଗାଡ଼ିରେ ସେତିକି ବାଟ ଯାଉଛନ୍ତି ।

ଜାଣିଥିବ, ରେଲ ଟାଣିବାକୁ ଘୋଡ଼ା ବଳଦ କିଛି ଲାଗନ୍ତି ନାହିଁ । ବାଷ୍ପବଳରେ ରେଲ ଟଣା ହୁଏ । ପାଣି ଫୁଟିଲେ ଯେଉଁ

ବାମ୍ପ ବାହାରେ ଏ ବାମ୍ପ ସେଇଥି । ଜେମସ୍ ୱାଟ୍ ବୋଲି ଜଣେ ଇଂରେଜ ପିଲାଦିନେ ଚୂଲିମୁଣ୍ଡେ ବଇଠକରେ ବସିଥିଲେ । ଚୂଲିରେ ଚା କରିବା ପାଇଁ ପାଣି ତାତୁଥିଲା । ଚା କେଟ୍‌ଲି ଦେହରେ ଗଡ଼୍ ପରି ଗୋଟିଏ ନଳୀ ଥାଏ । ପାଣି ଫୁଟିବାରୁ ସେହି ନଳୀ ବାଟେ ଫସ୍ ଫସ୍ ବାମ୍ପ ବାହାରୁଥିଲା । ଛୋଟ ପିଲାଟି ହାତରେ ଚାମୁଚ ଧରି ସେହି ନଳୀ ମୁହଁରେ ମାଡ଼ ଦେଉଥାଏ । ଏଣେ କେଟ୍‌ଲିର ଘୋଡ଼ଣୀ ଉଠି ଫକ୍ ଫକ୍ ବାମ୍ପ ବାହାରି ଯାଉଥାଏ । ପିଲାକୁ ତାଜୁବ ଲାଗୁଥିଲା । ମନକୁ ପିଲା ଭାବୁଥିଲା, " ଏ ବାମ୍ପର ସତେ କେତେ ବଳ !" ସେହି ଦିନଠାରୁ ଏ ବାମ୍ପର ବଳ କାମରେ ଲଗାଇବାକୁ କେତେ ଚେଷ୍ଟା ହେଲା ।

ଏହି ବାମ୍ପରେ ଇଞ୍ଜିନ ତିଆରି କରି ଲୋକେ ପ୍ରଥମେ କୋଇଲା ଖଣିରେ କାମରେ ଲଗାଇଲେ । ରାସ୍ତାରେ ଏହି ଇଞ୍ଜିନ କିପରି ଚାଲିବ, ଅନେକ ପଣ୍ଡିତ ସେହି ଚେଷ୍ଟାରେ ରହିଥିଲେ । କିଗନେଟ ବୋଲି ଜଣେ ଫରାସୀ ଇଞ୍ଜିନିୟର ଗୋଟିଏ ଇଞ୍ଜିନ୍ ତିଆରି କଲେ । କିନ୍ତୁ ସେଥିରେ କାମ ହେଲା ନାହିଁ । ତା ଉତ୍ତାରୁ ଜଣେ ଇଂରେଜ ରାସ୍ତାରେ ଚଳାଇବା ପାଇଁ ପୁଣି ଏକ ଇଞ୍ଜିନ ତିଆରି କଲେ । ସେଥିରେ ବି ବହୁତ ଦୋଷ ରହିଗଲା ।

ଶେଷରେ ଜର୍ଜ୍ଜ ଷ୍ଟିଫେନ୍‌ସନ ଇଞ୍ଜିନ୍ ତିଆରି କରି ତାକୁ ରାସ୍ତାରେ ଚଳାଇଲେ ।

ଜର୍ଜ୍ଜ ଷ୍ଟିଫେନ୍‌ସନ୍ ଦରିଦ୍ର ଘରର ପିଲା । ତାଙ୍କ ବାପ କୋଇଲା ଖଣିରେ କାମ କରୁଥିଲେ । ସେ ପୁଅକୁ ପାଠ ପଢ଼ାଇ ପାରି ନ ଥିଲେ । ଜର୍ଜ୍ଜ ପିଲାଦିନେ ଦିନକୁ ଦିଅଣା ମଜୁରିରେ ମେଣ୍ଢା ଚରାଉଥିଲେ; ବଡ଼ ହେଲାରୁ କୋଇଲା ଖଣିରେ କାମ କଲେ । ଇଞ୍ଜିନ୍‌ରେ କୋଇଲା ଦେବା କାମ ସେ କରୁଥିଲେ । ସେତେବେଳକୁ ତାଙ୍କ

ବୟସ ୧୮ ବର୍ଷ । ସେ ସମୟରେ କେତେକ ଲୋକ ନୈଶ ବିଦ୍ୟାଳୟ କରି ମଜୁରିଆଙ୍କୁ ପାଠ ପଢ଼ାଉ ଥାଆନ୍ତି । ସେହିଠାରେ ୧୯ ବର୍ଷ ବୟସରେ ଜର୍ଜ ଅକ୍ଷର ଶିଖିଲେ ।

ସେ ଯେଉଁ ଇଞ୍ଜିନ୍‌ରେ କାମ କରୁଥାଆନ୍ତି, ସେ ଇଞ୍ଜିନ କିପରି ଚଳେ ତା ସେ ଭାବି ଭାବି ବୁଲୁଥାଆନ୍ତି । ପାଠ ପଢିଲାରୁ ସେହି ବିଷୟରେ ଯୋଉସବୁ ଖୋଜି ଖୋଜି ସେ ପଢିଲେ । ୧୮୧୩ ଖ୍ରୀଷ୍ଟାବ୍ଦରେ ଜର୍ଜ ଭୂମିରେ ଚଳାଇବା ପାଇଁ ଗୋଟିଏ ଇଞ୍ଜିନ୍ କଳ୍ପନା କରି ଯେଉଁ କୋଇଲା ଖଣିରେ କାମ କରୁଥିଲେ, ସେହି ଖଣିର ମାଲିକଙ୍କୁ ଦେଖାଇ ତାହା ବୁଝାଇଲେ । ମାଲିକ ଭାରି ଖୁସି ହେଲେ, ଓ ଇଞ୍ଜିନଟି ତିଆରି କଲେ ସବୁ ଖର୍ଚ୍ଚ ଯାକ ସେ ଦେବେ ବୋଲି କହିଲେ । ବର୍ଷେ କାଳ ଲାଗି ଜର୍ଜ ଇଞ୍ଜିନଟି ତିଆରି କଲେ । ୧୮୨୫ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୨୭ ତାରିଖରେ ଷ୍ଟିଫେନ୍‌ସନଙ୍କ ଇଞ୍ଜିନ୍ ରାସ୍ତାକୁ ବାହାରିଲା । ଦେଶରେ ସେଦିନ ହୁଲସ୍ଥୁଲ ପଡ଼ିଗଲା । ପିଲା, ବୁଢ଼ା, ସମସ୍ତେ ନୂଆ ରେଲଗାଡ଼ି ଦେଖିବାକୁ ଆସି ଜମା ହୋଇଗଲେ । ଇଞ୍ଜିନ୍ ପଛରେ ଅଠୋଟି ଡବା ଯୋଡ଼ା ହେଲା, ଲୋକେ ସେଥିରେ ବସିଲେ । ଷ୍ଟିଫେନ୍‌ସନ୍ ନିଜେ ଇଞ୍ଜିନ୍ ଚଳାଇଲେ । ଲାଲ୍ ପତାକା ଧରି ଆଗରେ ଜଣେ ଦଉଡ଼ିଲା, କିନ୍ତୁ ଇଞ୍ଜିନ୍ ଜୋରିବାରୁ ସେ ପଛକୁ ପଡ଼ିଗଲା ! ସବୁଆଡ଼ୁ ଜୟଜୟ ଧ୍ୱନି ଉଠିଲା ।

ଏଣିକି ଷ୍ଟିଫେନ୍‌ସନ୍ ଉତ୍ସାହରେ କାମରେ ଲାଗିଗଲେ । ଚାରିବର୍ଷ ପରେ ସେ "ରକେଟ" ବୋଲି ଇଞ୍ଜିନ୍ ତିଆରି କଲେ । ସେଥିପାଇଁ ସେ ସାତ ହଜାର ଟଙ୍କା ପୁରସ୍କାର ପାଇଥିଲେ । ସେତେବେଳେ ଏହା ଘଣ୍ଟାରେ ୩୦ ମାଇଲ ଚାଲୁଥିଲା । ବେଗରେ ଗାଡ଼ି ଚାଲିଲେ ଭିତରେ ବସିଥିବା ଲୋକଙ୍କ ନିଶ୍ୱାସ ବନ୍ଦ ହୋଇଯିବ ବୋଲି ଲୋକେ ଭାବୁଥିଲେ; କିନ୍ତୁ ସେ ଭୟ ଛାଡ଼ିଗଲା ।



ପୃଥିବୀର ପ୍ରାୟ ସବୁ ଅଞ୍ଚଳରେ ରେଲଗାଡ଼ି ଚାଲିଲାଣି । ରେଲଗାଡ଼ି ସବୁ ପ୍ରକାର ରାସ୍ତାରେ ଚାଲି ପାରେ ନାହିଁ । ତେଣୁ ରାସ୍ତା ଉପରେ ଦୁଇଟି ରେଲ ଲାଇନ୍ ବସାଇ ରେଲ ରାସ୍ତା ତିଆରି କରାଯାଏ । ତାହାରି ଉପରେ ରେଲ ଗାଡ଼ିର ଚକ ଗଡ଼ି ଗଡ଼ି ଯାଏ । ଷ୍ଟିଫେନ୍‌ସନଙ୍କ ଯୋଗେ ପୃଥିବୀରେ ଏକ ନୂଆ କଥା ହେଲା; ବାମ୍ପ ଗାଡ଼ି ଟାଣିଲା ।

ଆଜିକାଲି ଘଣ୍ଟାରେ ୬୦, ୮୦ ବା ୧୦୦ ମାଇଲ ଯିବା ଭଳି ଇଞ୍ଜିନ୍ ହେଲାଣି । ରେଲଗାଡ଼ି ଯୋଡ଼ାଏ ଲାଇନ୍ ଉପରେ ଚାଲିବାରୁ ବେଶି ବେଗରେ ଯାଇପାରୁ ନାହିଁ ବୋଲି ଇଂଲଣ୍ଡର ଜଣେ ପଣ୍ଡିତ ଏବେ ବାହାରିଛନ୍ତି—ସେ କହିଲେ ଗୋଟିଏ ମାତ୍ର ଚକ୍ର ର ରେଲ ଲାଇନ କରି ଅଦ୍ଭୁତ ବେଗରେ ଗାଡ଼ି ଚଳାଇବେ ।

ରେଲ ଇଞ୍ଜିନ୍ ପରେ ଇଞ୍ଜିନ କିଛିଦିନ ପରେ ଜାହାଜରେ ଲାଗିଲା । ଆଗେ ପାଲ ପବନରେ ଜାହାଜ ଚାଲୁଥିଲା । ଏହି କଳରେ

ଜାହାଜ ଚାଲିବାରୁ ଜାହାଜର ନାମ ହୋଇ ଜଳ ଜାହାଜ, ଯାଳି ଜାହାଜ ନୁହେଁ ।

ପ୍ରଶ୍ନ

୧ । ରେଲଗାଡ଼ି ଘଣ୍ଟାକେ ଚାଳିଶ ମାଇଲ ବାଟ ଯାଏ, ଆମେ ଚାଲି ଚାଲି ଗଲେ ସେତିକି ବାଟ କେତେ ଦିନରେ ଯିବା ?

୨ । ରେଲ ଇଞ୍ଜିନ ତିଆରି କରିବା କଥା କିଏ ବାହାର କଲା ?

୩ । ତଳେ କେତେଗୁଡ଼ିଏ ଶବ୍ଦ ଓ ସେମାନଙ୍କର ଅର୍ଥ ମିଶାମିଶି ହୋଇ ରହିଛି । କଥ ଜାହାର ଅର୍ଥ ବାହାର କର :— ଦରିଦ୍ର, ବିଦ୍ୟାଳୟ, ଗରିବ, ରାସ୍ତା, ପାଠଶାଳା, ଭୟ, ବାଟ, ଡର, ଅଗ୍ରହ, ଉତ୍ସାହ ।

---

## ଦେଓ୍ୱାନ ଓ ରଘୁଆ

ରାଜାଙ୍କ ଦେୱାନଙ୍କ ଦରମା ମାସିକୁ ହଜାର ଟଙ୍କା । ତାଙ୍କର ଗୋଟିଏ ଚାକର ଥାଏ, ତା ଦରମା ମାସକୁ ଦଶଟି ଟଙ୍କା । ଦେୱାନ ପାଞ୍ଚ ଘଣ୍ଟା ଅଫିସରେ ବସି କାମ ବୁଝାସୁଝା କରନ୍ତି; କାଗଜ ଉପରେ ଦସ୍ତଖତ କରନ୍ତି । ଚାକରଟି ସକାଳୁ ଶୋଇବା ଯାଏ ସବୁ କାମରେ ଧାଁ ଧପଡ଼ କରି ଲାଗିଥାଏ । ଚାକରଟିର ନାମ ରଘୁଆ । ତାକୁ ରାଜା ଭାରି ଦେଖି ପାରନ୍ତି; ବିଶ୍ୱାସ ବି କରନ୍ତି ।

ରାଜା ଦିନେ ଖାଇବାର 'ଟେବୁଲ ପଡ଼ଡ଼'ରେ ଥିଲେ । ରଘୁଆ ପାଦ ମାଲୁଥିଲା । ରଘୁଆ କହିଲା, "ହମ୍ଭ, ଦିନ ନାହିଁ, ରାତି ନାହିଁ, ଆମେ ଚାକରମାନେ ସବୁବେଳେ ଖଟୁଛୁ, ଆମ ଦରମା ଦଶ ଟଙ୍କା । ଦେୱାନ ଆସି କାଗଜରେ ଖାଲି ଦସ୍ତଖତ କରିବେ,

ସେ ପାଉଛନ୍ତି ହଜାରେ ଟଙ୍କା । ଏଇଟା କଣ ପ୍ରଭୁଙ୍କ ରାଜ୍ୟମଣ୍ଡଳୀ ସୁନ୍ଦର ହେଉଛି ?"

ରଜା କହିଲେ, "ହଉ, ସେ କଥା ବୁଝିବା ।"

ରଜାଙ୍କ ରାଜଧାନୀ ନିକଟରେ ମହାନଦୀ । ସେ ନଦୀରେ ବେପାରୀମାନେ ବଡ଼ ବଡ଼ ନାଆରେ ଦୂରରୁ ଜିନିଷ ଆଣନ୍ତି । ସେସବୁ ଜିନିଷ ବିକି ସେମାନେ ପଇସା ନିଅନ୍ତି କିମ୍ବା ତା ବଦଳରେ ଅନ୍ୟ ଜିନିଷ ନିଅନ୍ତି । ଦିନେ ରଜା ଶୁଣିଲେ, ଏହିପରି ଜଣେ ବେପାରୀ ନାଆରେ ଜିନିଷ ନେଇ ଦୂରରୁ ଆସିଛନ୍ତି । ରଜା ରଘୁଆକୁ ଡାକି କହିଲେ, "ରଘୁଆ, ବୁଝିଆସିଲୁ, ନାଆରେ କଏ କି ଜିନିଷ ଆଣିଛି, କଅଣ କରିବ ?"

ରଘୁଆ ଏହା ଶୁଣି ନଈକୂଳକୁ ଧାଇଁଗଲା; ବୁଝି ଆସି କହିଲା, "ପ୍ରଭୁ, ସମ୍ବଲପୁରରୁ ନାଆରେ ମାଲ ଆସିଛି । ବେପାରୀ ଗ୍ରାହକ ପାଇଲେ ବିକିବ ।"

ରଜା କହିଲେ, "ଅରେ, କି ମାଲ ଆଣିଛି, କିମିତି ବିକିବ ? ବୁଝିଆ ।"

ରଘୁଆ ଫେରିଗଲା, ବୁଝିଆସି କହିଲା, "ସେ ମଠା ଆଣିଛି, ପୁଞ୍ଜଲ ଆଣିଛି । ଦର ପଟିଲେ ବିକିବ ।"

ରଜା କହିଲେ, "ଅରେ କେଉଁଠା ମଠା, କିପରି ମଠା, କିପରି ଦର ? ଭଲ ହେବକି ନାହିଁ ?"

ରଘୁଆ ଫେରି ବୁଝିଆସି କହିଲା, "ସୋନପୁର, ବରପାଲିର ମଠା, ଭଲମନ୍ଦ ସବୁ ରକମ ଅଛି । ଦେଖିଲେ ଦର ହେବ । ସେ ଭଲ ଦେବ ନା ।"

ରଜା ପୁଣି କହିଲେ, "ଅରେ, ଏଥିରୁ ସେ ବେପାରୀ କି ଜିନିଷ ନେବ ? ମଠା ଆମ ଭାମକୁ ପାଇବ କି ନାହିଁ ? ଏଠାରେ କଏ କିଣିବ ? ଗୁଞ୍ଜଲ କିପରି ?"

ଏହା କହିଲା ବେଳକୁ ଦେଓ୍ୱାନ ଆସି ପହଞ୍ଚିଲେ । ରାଜା ତାଙ୍କୁ ଡକାଇ ପଠାଇଥିଲେ । ସେ ଆସିଲାକ୍ଷଣି ରାଜା କହିଲେ, "ଦେଓ୍ୱାନ ସାହେବ, ଶୁଣୁଛ, 'ନାଆରେ ମାଲ ଆସିଛି, ବୁଝି ଆସନ୍ତୁ ତ ।'"

ରଘୁଆ ଆଉ ଗଲା ନାହିଁ । ଦେଓ୍ୱାନ ଗଲେ । ରଘୁଆ ରାଜାଙ୍କ ଗହଣରେ ଅଛି, ଦେଓ୍ୱାନ ଫେରି ଆସିଲେ । ରାଜା ପଚାରିଲେ; "କଅଣ ବୁଝିଲେ ?"

ଦେଓ୍ୱାନ କହିଲେ, "ଏ ମଣେନୂଆ ବେପାରୀ । ସୋନପୁରିଆ ବରପାଲିଆ ମଠା ସବୁ ଆଣିଛି । ଭଲ ଶାଢ଼ୀ ଅଛି, ଯୋଡ଼ ଅଛି । ସେ ସବୁ ନଅରରେ ଦରବାର ହୋଇପାରେ । ପୁରୋହିତ ଦେବାଭଳି ଯୋଡ଼ ବି ଅଛି । ଦର ଏତେ ବେଶୀ ନୁହେଁ । ନୂଆ ବେପାରୀ କି ନା, ସେ ବେଶି ଲାଭ ରଖୁ ନାହିଁ । ସେ ଗୁଡ଼ଲ ବି ଆଣିଛି । ଗୁଡ଼ଲ ଅଳ୍ପ; କିନ୍ତୁ ଭଲ ଗୁଡ଼ଲ । ଏଠା ପ୍ରତି ଖୁବ୍ ଶସ୍ତା ନୁହେଁ । ହେଲେ କଣ ହେବ, ନଅର ଖର୍ଚ୍ଚ ପାଇଁ ସେ ଗୁଡ଼ଲ ରଖିବାକୁ ହେବ । ସେଆଡ଼େ ବିକ୍ରିବା ପାଇଁ ସେ ଲୁଣ ନେବ, ଚନ୍ଦନ କାଠ ନେବ, ସରୁ ସୂତାର ଲୁଗା, ଶାଢ଼ୀ ନେବ, ଭଲ ଘୋଡ଼ା, କାଙ୍କ, ଦାଆ, କଟୁରି ନେବ; ବାସନ ନେବ, ରୁପା ଅଲଙ୍କାର ନେବ, ଆଉ କେତେ କଅଣ ନେବ । ତେବେ ଆମେ ତାକୁ ଦେବା ଭିତରେ, ଏଠା କାରିଗରଙ୍କ ଘୋଡ଼ା, କାଙ୍କ, ଦାଆ, କଟୁରି ଦେବା । କଣ୍ଟେଇଲୋ ବାସନ ତ ଜାଣିଛ, ବାସନ ଦେବା । ରଣପୁର ମାଣିଆବନ୍ଧ ଲୁଗାକୁ ବଳି ଆମ ତନ୍ତୀଙ୍କ ଲୁଗା ଦେବା । ଦରକାର ପଡ଼ିଲେ ସେ କିଛି ଟଙ୍କା ବାକି ରଖିପାରେ ତେବେ, ମୁଁ ଅଟେ ବୁଝେଁ, ଆମେ କି କି ଜିନିଷ କେତେ ନେବା, ପୁଣି ଆମ ରାଜ୍ୟରୁ କଅଣ କଅଣ କେତେ ଦେବା । କାଲି ସବୁ ଠିକ୍ କରିବା ।"

ଦେଓ୍ୱାନ୍ ବଦାଯ୍ଯ ହେଲେ । ଗାଁର ବଧୁଆକୁ ଗୁହାଁ ହିଁଇ ହସିଲ ପରି ହୋଇ କହିଲେ, "ରଧୁଆ, ବୁଝିଲୁ; ଦେଓ୍ୱାନ କାହିଁକି ମାସକୁ ହଜାରେ ଟଙ୍କା ନଅନ୍ତି ?"

## ପ୍ରଶ୍ନ

୧ । ଦେଓ୍ୱାନ୍ ବେଶି ସମୟ କାମ କରନ୍ତି, ନା ରଧୁଆ ବେଶି ସମୟ କାମ କରେ ? ବେଶ କାମ କରି ରଧୁଆ ଅଳ୍ପ ଦରମା ପାଏ କାହିଁକି ?

୨ ରେଙ୍ଗା ପହଡ଼, ପାଦ ମୂଳିବା, କାଳ, ଯୋଡ଼, ନଅର, ଗର୍ଭଣରେ—ଏଗୁଡ଼ିକରୁ କଅଣ ବୁଝିଲ ?

---

## ବିଲାତି ଆଳୁ

ଗୋଲ ଆଳୁକୁ ବିଲାତି ଆଳୁ କହନ୍ତି । ଏହା ବିଦେଶରୁ ଏ ଦେଶକୁ ଆସିଛି । ଏ ଦେଶରେ ଯେଉଁ ଆଳୁ ଆଗରୁ ଥିଲା; ତାକୁ



କହନ୍ତି ଦେଖିଥିଲ । ଏହି ଆଳୁ ଗଛ ଏକ ପ୍ରକାର ଲତି । ଏହାର ପନ ପାନ ପରି । ଏହି ଲତି ଖରାଦିନେ ଶୁଖିଯାଏ । ବର୍ଷା ହେଲେ ପୁଣି ବାହାରେ । ଲତି ଶୁଖିଗଲେ ଆଳୁ ଖୋଳା ହୁଏ । ଦୁଇ ତିନି ବର୍ଷରେ ଥରେ ଖୋଳିଲେ ବଡ଼ ବଡ଼ ଆଳୁ ବାହାରେ ।



ହାତୀଖୋଜ ପରି ଚେପ୍ଟା ଆଳୁକୁ ହାତୀଖୋଜିଆ ଆଳୁ କହନ୍ତି । ଖମ୍ବ ପରି ଲମ୍ବା ଆଳୁ ମଧ୍ୟ ଅଛି । ତାକୁ କହନ୍ତି ଖମ୍ବ ଆଳୁ ।

ବିଲାତି ଆଳୁ ପହିଲେ ଆମେରିକାରୁ ଆସିଥିଲା । ର‍୍ୟାଲେ ସାହେବ ଏହା ପ୍ରଥମେ ଇଂଲଣ୍ଡକୁ ଆଣିଥିଲେ । ସେତେବେଳେ ଇଂଲଣ୍ଡର ସମସ୍ତେ ଏହାକୁ ଭାରି ଘୃଣା କରୁଥିଲେ । କିନ୍ତୁ ସେତେବେଳର ଇଂଲଣ୍ଡର ରାଣୀ ଏଲିଜାବେଥ୍ ନିଜେ ଏହା ଖାଇଲେ ଓ ବଡ଼ ବଡ଼ ଲୋକଙ୍କୁ ଡାକି ଖୁଆଇଲେ । ତହୁଁ ଏହା ସେ ଦେଶରେ ଚଳିଲା ।

ଏ ଦେଶର ପୁରୁଣାକାଳିଆ ଲୋକେ ଏବେ ମଧ୍ୟ ବିଲାତିଆଳୁ ଖାଇ ନାହାନ୍ତି । ପୂର୍ବେ ଦେଉଳରେ ଏହା ପାଉଣ ନାହିଁ, ମାତ୍ର ଲୋକଙ୍କ ଭିତରେ ଏହା ଖୁବ୍ ଚଳି ଗଲାଣି; ଭୁବନେଶ୍ୱର ଦେଉଳରେ ପଶିଗଲାଣି ।

ଏବେ ଏ ଦେଶରେ ବହୁତ ବିଲାତିଆଳୁ ଚାଷ ହେଉଛି । ଏହା ବିଲରେ ହଳ ହୋଇ ଲଗାଯାଏ, ବହୁତ ଯତନ କରି ଜଳ ଦେବାକୁ ହୁଏ । ବୁନ୍ଦା ବୁନ୍ଦା ହୋଇ ଏହା ମାଡ଼େ । ଏହାର ଶାଗ

ବଡ଼ ନରମ ଓ ସୁଆଦ । ମାନ ଶାଗ ଛୁଣ୍ଡ଼ାଇ ଖାଇଲେ ଅଚ୍ଛୁ ଭଲ ହୁଏ ନାହିଁ । ପନ ସବୁ ଶୁଖି ଅସିଲେ ମୂଳରେ ଅଳୁ ଯୋଖଣ ହୁଏ । ଏହିପରି ଓଲୁଅ, କନ୍ଦମୂଳ, ସାରୁ ପ୍ରଭୃତି ଜେତେ ଗଛର ମୂଳଗୁଡ଼ିକେ ଖାଅନ୍ତି, ସେ ସବୁରେ ପନ ଶୁଖି ଅସିଲେ ମୂଳ ପାକଳ ହୁଏ । ପନ ପାଚିଗଲେ ସେହି ପନର ସାରି ଜିନଷ ମୂଳକୁ ଯାଏ ଓ ପୁଣି ପନ ହେବାପାଏ ମୂଳରେ ରହେ । ଏହି ଅବସ୍ଥାରେ ସେ ମୂଳକୁ ଖୋଳା ଆଣି ଅମେ ଖାଉ ।

## ପ୍ରଶ୍ନ

୧ । ହାତୀ ଖୋଜଅ ଓ ଗମ୍ବଅଳୁ ଭିତରେ ପ୍ରଭେଦ କଅଣ ? ଗୋଲ ଅଳୁ ପ୍ରଥମେ ଇଂଲଣ୍ଡକୁ କିଏ ଆଣିଲା ଏବଂ ସେଠାରେ ତାହା କିପରି ଚଳିଲା ? କିପରି ଅବସ୍ଥାରେ ଅଳୁ ଖୋଳାଯାଏ ?

୨ । ତଳେ କେତେଗୁଡ଼ିଏ ଗଛର ନାମ ଦିଆଗଲା । ସେମାନଙ୍କ ମଧ୍ୟରୁ କେଉଁଗୁଡ଼ିକ ଲତି ଓ କେଉଁ ଗୁଡ଼ିକ ବୁଦା ? କାହାର ଫଳ ଖିଆଯାଏ ଓ କାହାର ମୂଳ ଖିଆଯାଏ ?

କଲରା, ବାଇଗଣ, ସାରୁ, ଅଳୁ, କନ୍ଦମୂଳ, ଶିମ୍ବ, ଲଙ୍କାମରିଚ ।

---

## ଭାଗ୍ୟନିଧି କି ଲାଭ ?

ସହରକୁ ତିନି କୋଶ
ଗାମରେ ବୁଢ଼ାର ବାସ,
ଗଡ଼ିବ ଦେ ବଡ଼;
ତିନି ପୁଅଙ୍କ ଧରି
ନିତି ନାନା ଭିକ୍ଷାକରି
ବୁଲଇ ସହରି ।

ବଡ଼ ବଡ଼ କୋଠାଘର,
ପାଟେର ଫାଟକ ଦ୍ୱାର,
ଶଙ୍କି ଦେଖନ୍ତି ସେ,
ମୁଠାଏ ମିଳଇ କାହିଁ,
କିଏ ବା ଡାକଇ 'ନାହିଁ',
ଫେରନ୍ତି ନିରାଶେ ।

ଦିବସେ ମୁଠାଏ ଚୁଡ଼ା
କାହୁଁ ହେଲେ ଆଣେ ବୁଢ଼ା;
ସହର ବାହାରେ,
ନିତ୍ୟକର୍ମ ସାରି ଦେଇ
ଖାଆନ୍ତି ସେ ବତୁରାଇ,
ବସି ନଈକୂଳେ ।

କେତେ ଦ୍ୱାରେ ମାଗି ମାଗି
ପେଟ ତ ଗଲାଣି ଲାଗି,
ହେଲାଣି ଜଟବଳ,
ଗୋଡ଼ ପଡ଼ୁଅଛି ଭାଙ୍ଗି,
କିଛୁ ମିଳି ନାହିଁ ଅଳ୍ପ
ଚୂଡ଼ା କି ଚାଉଳ ।

ଦେଖନ୍ତି ସେ କୋଠା ଗୃହୁଁ
ଫାଟକ ତ ଫିଟି ନାହିଁ
ପଶିଲେ ସାହସେ;
ଘୋଡ଼ାଏ ଦେଖିଲେ ଅସି,
ଦେହୁଁ ମାଂସ ପଡ଼େ ଖସି,
ମାଡ଼ିଲ ସଇସେ ।

ମାଙ୍କ ପାହ୍ନ କ ସୋହାଗେ
ବତୁରି ବୁଢ଼ ତା ଅଙ୍ଗ
ସଇସ ଟୁଅଇ,
ସେ ବୁଢ଼ ବାଲଛ ଭରି,
ଛି ଅନନ୍ଦେ ଖାଏ ଘୋଡ଼ା
ଛାନ ନେହ୍ଲାଇ
କେତେବେଳ ରହୁପାଇ
ପୁଅ କହେ ବାପେ ଗୃହିଁ,
ଦେଖାଇ କରମ,
"ପାଇ ଥାଅନ୍ତେଇ ହେନେଲ
ଆମେ ଏ ମର୍ଣ୍ଣ ମଣ୍ଡଳ
ଘୋଡ଼ାର ଜନମ।"
କିଛି ନ କହେ ସେ ବୁଢ଼ା;
ଘାଲ ଭଙ୍ଗା କଣି ଚୁଡ଼ା
ଗଲେ ନଇକୂଳେ,
ଦେଖିଲେ ଘୋଡ଼ା ଏ ତହିଁ,
ଅଗ ଗୋଡ଼ ଛନ୍ଦା ହୋଇ
ଚର୍ରେ ବନ୍ଧାଇଲେ
ଜଗିଅ କେ ନାହିଁ ଛାଇଁ,
ଡେଇଁ ଡେଇଁ ଖାଏ ଦାନ୍ଧ
ଗଣ୍ଡଅଁରେ ପଶି;
ସ୍ତବ୍ଧ ହେବ ସେ ବୁଢ଼ା;
ଠେଙ୍ଗରେ ହୋଉଛୁ ଘାଅ,
କୁଅ ଯାଏ ବସି।

ପୁଅକୁ ଦେଖାଇ ବୁଢ଼ା
କହେ, 'ଦେଖ ଏଇ ଘୋଡ଼ା,
ବୁଝିଲୁକି ଧନ;
ଆମ କଚ୍ଛନ୍ଦ ଘୋଡ଼ା କଥା
ଚହଲାଇଥିଲେ ହୋଇଥାନ୍ତା
ଏହାର ସମାନ ।''

ପ୍ରଶ୍ନ

୧ । ଘୋଡ଼ା ଜନ୍ତୁ ପାଳିବାପାଇଁ ଚାଷୀ ପୁଅ ବାହୁଁକି ମନେ କଲା ? ଦାଲଖିଆ ଘୋଡ଼ାକୁ ଦେଖାଇ ବୁଢ଼ା ପୁଅକୁ କଅଣ କହିଲା ?
୨ । ଏ ପଦ୍ୟଟିର ସାରକଥା ନିଜ ଭାଷାରେ ଲେଖ ।

---

## ଇନ୍ଦ୍ରଦ୍ୟୁମ୍ନ

ବହୁକାଳ ପୂର୍ବେ ଇନ୍ଦ୍ରଦ୍ୟୁମ୍ନ ବୋଲି ଏ ଦେଶରେ ଜଣେ ରଜା ଥିଲେ । ସେ ଜଗନ୍ନାଥଙ୍କୁ ଆଣି ପୁରୀ ଦେଉଳରେ ବସାଇ ଥିଲେ । ଏହିପରି କେତେ ପୁଣ୍ୟ କାର୍ଯ୍ୟ କରିବାରୁ ଦେବତାଙ୍କ ସଙ୍ଗେ ସ୍ୱର୍ଗରେ ରହିଲେ ବୋଲି କଥା ଅଛି । କେତେକାଳ ପରେ ସେ ପୁଣି ସ୍ୱର୍ଗରୁ ଥରେ ମର୍ତ୍ତ୍ୟକୁ ବୁଲିବାକୁ ଆସିଥିଲେ । ସେ କଥାଟି ଏଠାରେ କୁହା ଯାଉଛି ।

ନାରଦ ଋଷି ବହୁକାଳରୁ ଏ ଦେଶରେ ଅଛନ୍ତି । ଏବେ ସେ କେଉଁଠି ପାହାଡ଼ ଜଙ୍ଗଲରେ ବସି ତପସ୍ୟା କରୁଅଛନ୍ତି, ତାଙ୍କୁ କେହି ଦେଖି ପାରୁ ନାହାନ୍ତି । ସେକାଳେ ସମସ୍ତେ ତାଙ୍କୁ ଦେଖୁଥିଲେ । ସେ କେଡ଼େ କାଳର ଲୋକ, ତା କେହି କହି ପାରିବେ

ନାହିଁ । କଥା ଅଛି, ସେ କେବେ ମରିବେ ନାହିଁ, କି ବୁଢା ହେବେ ନାହିଁ । ସେ ଅମର ।

ଇନ୍ଦ୍ରଦ୍ୟୁମ୍ନ ଆସି ନାରଦଙ୍କ ପାଖେ ପହଞ୍ଚି ପଚାରିଲେ, "ନାରଦ, ତୁମେ ମୋତେ ଚିହ୍ନି ପାରୁଚ ?" ନାରଦ କହିଲେ, "ନା, ମୁଁ ତ ଚିହ୍ନି ପାରୁ ନାହିଁ ।" ସେଠୁ ଇନ୍ଦ୍ରଦ୍ୟୁମ୍ନ ପଚାରିଲେ "ଅଚ୍ଛା, ତୁମଠୁ ବୟସରେ ବଡ଼ କିଏ ? ଚାଲ, ତାକୁ ପଚାରିବା ।"



ନାରଦ କହିଲେ, "ହିମାଳୟରେ ପ୍ରାବାରକର୍ଣ୍ଣ ବୋଲି ଗୋଟିଏ ପେଚା ଅଛି; ସେ ମୋଠୁ ବହୁତ ବଡ଼ ।" ତୁହେଁ ସାଙ୍ଗ ହୋଇ ହିମାଳୟର ପ୍ରାବାରକର୍ଣ୍ଣଙ୍କ ପାଖକୁ ଗଲେ । ପ୍ରାବାରକର୍ଣ୍ଣଙ୍କୁ ଦେଖି ଇନ୍ଦ୍ରଦ୍ୟୁମ୍ନ ପଚାରିଲେ, "ପ୍ରାବାରକର୍ଣ୍ଣ; ମୋତେ ଚିହ୍ନୁଛ ।"

ପ୍ରାକାରକର୍ଣ୍ଣ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦେଖିବାବେଳ ମାତ୍ରେ ନିରେଖିକରି ଚାହିଁଲେ; ପରେ କହିଲେ, "ନା, ମୁଁ ତ ଚିହ୍ନିପାରୁ ନାହିଁ ।" ତହୁଁ ଇନ୍ଦ୍ରଦ୍ୟୁମ୍ନ ପଚାରିଲେ, "ଅଚ୍ଛା, ତୁମଠୁ ବୟସରେ ବଡ଼ ଆଉ କିଏ ଅଛି ?" ପ୍ରାକାରକର୍ଣ୍ଣ କହିଲେ, "ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ନାଡ଼ୀଜଙ୍ଘ ବୋଲି ବଗ ଅଛି; ସେ ମୋଠୁ ବଡ଼ ।"

ସେଠାରୁ ସମସ୍ତେ ଇନ୍ଦ୍ରଦ୍ୟୁମ୍ନ ପୋଖରୀ ପାଖକୁ ଆସି ଦେଖିଲେ, ବିଚରା ବୁଢ଼ା ନାଡ଼ୀଜଙ୍ଘ ପାପଦଣ୍ଡିରେ ବସି ଖରା ପୁଆଉଛି । ଡାକିବାରୁ ସେ କୂଳକୁ ଆସିଲା । ଇନ୍ଦ୍ରଦ୍ୟୁମ୍ନ ପଚାରିଲେ, "ନାଡ଼ୀଜଙ୍ଘ, ମୋତେ ଚିହ୍ନିପାରୁଛ ?" ନାଡ଼ୀଜଙ୍ଘ ଅନେକ କାଳ ଚାହିଁଲା; ଶେଷକୁ କହିଲା, "ନା, ମୁଁ ଚିହ୍ନିପାରୁ ନାହିଁ ।" ତହୁଁ ଇନ୍ଦ୍ରଦ୍ୟୁମ୍ନ ପଚାରିଲେ, "ଅଚ୍ଛା, ତୁମଠୁ ଆଉ ବୁଢ଼ା କିଏ ଅଛି ?" ନାଡ଼ୀଜଙ୍ଘ କହିଲା, "ହଁ, ଏହି ପୋଖରୀରେ ଅକୂପାର ବୋଲି କୂର୍ମ ଅଛି; ସେ ମୋଠୁ ବହୁତ ବଡ଼ ।"

ଅକୂପାର ପାଣି ଭିତରେ ଥିଲା । ଡାକିବାରୁ ସେ ଧୀରେ ଧୀରେ କୂଳକୁ ଆସି ପୋଖରୀ ଉପର ପାହାଚରେ ପିଠି ଦେଖାଇ ଶୋଇଲା । ଇନ୍ଦ୍ରଦ୍ୟୁମ୍ନ ପଚାରିଲେ, "ଅକୂପାର, ମୋତେ ଚିହ୍ନୁଛ ।" ବିଚରା ବୁଢ଼ା କଇଁଛ ଏହା ଶୁଣି ବେକକୁ ଟେକି ଇନ୍ଦ୍ରଦ୍ୟୁମ୍ନଙ୍କୁ ଚାହିଁଲା । ଚାହୁଁ ଚାହୁଁ ତା ଆଖି ଛଳ ଛଳ ହୋଇଗଲା, ଆନନ୍ଦରେ ତାର ଲୁହ ଗଡ଼ି ପଡ଼ିଲା । ସେ କହିଲା, "ମହାରାଜ ଇନ୍ଦ୍ରଦ୍ୟୁମ୍ନ, ମୁଁ ତୁମକୁ ଚିହ୍ନିପାରିବି ନାହିଁ; ଆଉ କାହାକୁ ଚିହ୍ନିବ ? ତମ କୀର୍ତ୍ତି କଣ ଏ ପୃଥିବୀ ଭୁଲିବ ?"

ସମସ୍ତେ ତ ଇନ୍ଦ୍ରଦ୍ୟୁମ୍ନଙ୍କ କଥା ଶୁଣିଥିଲେ; ତାଙ୍କ ନାଆଁ ଜାଣିଥିଲେ । ଏବେ ତାଙ୍କୁ ଦେଖି ଚିହ୍ନି ଭାରି ଖୁସି ହେଲେ । ଇନ୍ଦ୍ରଦ୍ୟୁମ୍ନ ପୁଣି ସ୍ୱର୍ଗକୁ ଫେରିଗଲେ ।

ପୃଥିବୀରେ ଇନ୍ଦ୍ରଦ୍ୟୁମ୍ନ ପୋଖରୀଅଛି । ସେଥିରେ ବହୁତ 'କୁର୍ମ' ଅଛନ୍ତି । କୁର୍ମ ବୋଇଲେ କଇଁଛ । ଜହ୍ନିଆ, ଭୁଜା, ମିଠାଇ ପ୍ରଭୃତି ପକାଇ ଡାକିଲେ ସେମାନେ ଖାଇବାକୁ କୂଳକୁ ଆସନ୍ତି । ସେମାନଙ୍କ ଭିତରୁ କେତେକ ଗୋଟାଏ ଗୋଟାଏ ବେଶୀ ପର ବଡ଼ । ତାଙ୍କ ପିଠରେ ଛିଙ୍କଳା ବସି ଗଲାଣି । ସେମାନେ କେତେ କାଳର, କିଏ କହିବ ।

ଲୋକେ କହନ୍ତି, ଇନ୍ଦ୍ରଦ୍ୟୁମ୍ନ ଯେତେବେଳେ ପୃଥିବୀ ବନ୍ଧ ଦେଇଥିଲେ ଓ ଗୁଣ୍ଡିଚା ଘର ତୋଳାଇ ଥିଲେ, ସେତେବେଳେ ଯେଉଁ ମାନେ ପଥର ବୋହୁଥିଲେ, ସେମାନେ କୁର୍ମ ହୋଇ ଏଠି ପୋଖରୀରେ ଅଛନ୍ତି ।

ପ୍ରଶ୍ନ

୧ । ଇନ୍ଦ୍ରଦ୍ୟୁମ୍ନ କିଏ ? ନାରଦ, ବଗ ଓ ପେଚା ତାଙ୍କୁ ଚିହ୍ନି ପାରିଲେ କାହିଁ କାହିଁକି ? କୁର୍ମ କିପରି ଇନ୍ଦ୍ରଦ୍ୟୁମ୍ନଙ୍କୁ ଚିହ୍ନିଲା ?

୨ । ଜଙ୍ଗଲ, ସ୍ୱର୍ଗ, ପାଦଦଣ୍ଡି, କୀର୍ତ୍ତି, ଛଳ ଛଳ, ଧୀରେ ଧୀରେ— ଏଗୁଡ଼ିକ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଲେଖ ।

---

## ପଞ୍ଚାମୃତ

ଗୁରୁ—ଆଜିର ଦିନଟି, ଆମେ ଆସ ଗୋଟାଏ ପଞ୍ଚାମୃତ କରିବା । ଆମ ଭିତରେ କେତେ କଳିଲଗୁଛି; କିଏ କାହାକୁ ଏକୁଟିଆ କରୁଛି, କିଏ କାହାକୁ କଥା କହୁନାହିଁ, କିଏ ବା କାହାର ନାଆଁରେ ଖତ କହୁଛି । ପଞ୍ଚାମୃତ କଲେ, ସବୁ କଥା ସେମାନେ ବିଗୁର କରି ନିଷ୍ପତ୍ତି ଦେଇଥିବେ ।

ରଘୁ—ପଞ୍ଚାୟତ କ'ଣ ? ଆମେ ତା କମିତି କରିବା ?

ଜଗୁ—ଆରେ ପଞ୍ଚାୟତ ଜାଣି ନାହଁ ? ଗାଁ ମାନଙ୍କରେ ଏବେ ପଞ୍ଚାୟତ ଅଛି । ଗାଁ ଲୋକେ ତିନ ବରଷ ପାଇଁ ପାଞ୍ଚଜଣଙ୍କୁ ବାଛନ୍ତି । ସେମାନଙ୍କ ପାଖକୁ ମକଦ୍ଦମା ଆସେ । ସେମାନେ ସବୁ ବୁଝି ତୁଟାଇ ଦିଅନ୍ତି ।

ହରି—ଗାଁରେ ଯେଉଁ ପଞ୍ଚାୟତ ହୁଏ, ତାକୁ କ'ଣ ଗାଁ ଲୋକେ ବୁଝି ବାଛନ୍ତି କି ? ସରକାର ପାଞ୍ଚ ଠିକ୍ କରି ଦିଅନ୍ତି ।

ନବି—ଆରେ, ଏବେ କିନା ସରକାର ବାଛୁନାହାନ୍ତି । ଆଗେ କ'ଣ ଦେଖିଥିଲ ? ଆଗେ ତ ଏହି ଗାଁ ପଞ୍ଚାୟତ ଘରୁ କରୁଥିଲେ । ଲୋକେ କଣ ସରକାର କି ପୋଲିସ ବୋଲି କିଛି ଜାଣୁଥିଲେ ।

ଜଗୁ—ସେଦିନ କ'ଣ ହେଲା ! ହରି ସାହୁ ଦୋକାନରୁ ଶ୍ୟାମ ପଣ୍ଡା ବାକି କରିଥିଲେ । ବାକି ପଇସା ମାଗିବାରୁ ଶ୍ୟାମ ପଣ୍ଡାଙ୍କ ପୁଅ କଳି କଲା; ହରି ସାହୁର ଚାକରକୁ ଗୁପୁଡ଼ାଏ ମାରିଲା । ମକଦ୍ଦମା ହେଲା । କେତେ ପଇସା ଖର୍ଚ୍ଚ କରିଥାଆନ୍ତେ । ପଞ୍ଚାୟତ ମକଦ୍ଦମା ବୁଝି ତୁଟାଇ ଦେଲେ । ଶ୍ୟାମ ପଣ୍ଡାଙ୍କ ପୁଅ ଦୋଷ ମାଗିନେଲା । ଶ୍ୟାମ ପଣ୍ଡା ବାକି ପଇସା ଦେଇ ପକାଇଲେ । ଭେଣ୍ଡେ ସୁବିଧାରେ ଛିଣ୍ଡିଗଲା ।

ନବି—ଏବେ ସବୁ କଥା ହେଉଛି, ଗାଁ ଲୋକେ ପଞ୍ଚାୟତ ବାଛୁଛନ୍ତି । ସେଇ ପଞ୍ଚାୟତ ସ୍କୁଲ ଚଳେଇବେ, ରାସ୍ତା କରିବେ, ଜଳର ବନ୍ଧ ନାଳ ଠିକ କରିବେ, ଚଉକିଆ ରଖିବେ, ଫସଲ ଚୋର ଉଚ୍ଛେଦ ତା କରିବେ । ଏହିପରି ଗାଁ କାମ ଯାକ ସବୁ କରିବେ । ସେମାନେ ବି ଛୋଟ ମକଦ୍ଦମା ବୁଝି ବାଦ ବିବାଦ, ପାଉଣା ଦେଣା ତୁଟାଇବେ ।

ଜଗୁ—ଅସଲ କଥା ତ କହୁ ନାହଁ । ସେମାନେ କଣ ଏହା ସବୁ ଖାଲି ଶୂନ୍ୟରେ କରିବେ । ସେଥିପାଇଁ ସେମାନେ ଟିକସ ବସାଇବେ; ଲୋକେ ତାଙ୍କୁ ଟିକସ ଦେବେ । ସେହି ଟିକସ ପଇସାରେ ସେମାନେ ସବୁ କାମ ଚଳାଇବେ ।

ରଘୁ—ତେବେ ଗାଁ ଟି ତ ଗୋଟିଏ ସରକାର ହୋଇଯିବ । ସରକାର ଆଉ କଅଣ କରନ୍ତି କି ! ଖଜଣା, ଟିକସ ନିଅନ୍ତି, ସେଇଥିରୁ ଦରମା ଦେଇ ପୁଲିସ, ହାକିମ ସବୁ ରଖି, ସମସ୍ତଙ୍କ ଭଲ ମନ୍ଦ ବୁଝି ରାଜ୍ୟ ଚଳାନ୍ତି । ସରକାର ବା ଯାହା ମନକୁ ଯାଏ କରନ୍ତି, ପଞ୍ଚାୟତ ବି ସେଇଆ କରିବ ।

ହରି—ସେକାଳ ଆଉ ନାହିଁ । ଏବେ ପରା ଭୋଟ ହେଉଛି ସବୁ, ଲୋକେ ଯାହାଙ୍କୁ ଭୋଟ ଦେବେ, ସେଇ ପରା ସରକାର ଚଳାଇବେ । ଖରାପ କଲେ ଆଉ ଥରକୁ ଆଉ ତାଙ୍କୁ ଭୋଟ ମିଳିବ ? ସେଣେ ବ; ସରକାର ଯେ ଚଳାଇବେ, ସେ ଠିକ୍ ଏ ଡରରେ । ଲୋକେ ସବୁ କଥାରେ ତାଙ୍କ ଦୋଷ ଧରି ପାରିବେ ନାହିଁ । ମୂଳସ କର୍ମଚାରୀମାନେ ଭୁଲ କଲେ ସେ ସବୁ ଟିକଲେ କଣ କିଏ ପାଇବେ ? ସେଥିପାଇଁ ଗାଁରେ ପଞ୍ଚାୟତ ହେବ ପଞ୍ଚାୟତ ତ ଆଉ ସେ କଥା କରିବେ ନାହିଁ । ଲୋକେ ତାଙ୍କ କାମକୁ ପସନ୍ଦ କରୁଛନ୍ତି କି ନାହିଁ ସବୁବେଳେ ଦେଖୁଥିବେ ।

ଜଗୁ—ଖାଲି ବଡ଼ ବଡ଼ କଥାରେ ମାତିଲେ ଯେ । ଗାଁ କଥା, ପୁଣି ସରକାର କଥା । ବର୍ତ୍ତମାନ ଏହି ସବୁ କଥାରେ ଆମର କଅଣ ଅଛି । ଆମେ ଆଉ ଆମର ପଞ୍ଚାୟତ କରିବା ।

ହରି—ହଉ, ଭଲ, ଇସ୍କୁଲ ଛୁଟି ହେଲେ ଏଇ ଖେଳ ପଡ଼ିଆରେ ସବୁପିଲା ଏକାଠି ହେବା । ଗୋଟିଏ ସଭା ହେବ । ଭୋଟ

ନ୍ତି । ହେବ । ଯେଉଁ ପାଞ୍ଚଜଣ ବେଶି ଭୋଟ ପାଇବେ, ସେ ହେବେ ଆମର ପଞ୍ଚାମୃତ । ଆମ ଭିତରେ ସବୁ କଳି ଝଗଡ଼ା ସେମାନେ ତୁଟାଇବେ । ତିନ ମାସକୁ ତିନ ମାସ ଫେର ଭୋଟ ନିଆ ହେଉଥିବ ।

## ପ୍ରଶ୍ନ

୧ । ପଞ୍ଚାମୃତ କଏଣ ? ଆଜିକାଲି କଏ ପଞ୍ଚାମୃତ ବାଛୁଛନ୍ତି ? ଶ୍ୟାମ ପରିଡ଼ା କଥା ପଞ୍ଚାମୃତ କିପରି ନିଷ୍ପତ୍ତି କଲେ ? ତାହା ଦ୍ୱାରା କି ଉପକାର ହେଲା ?

୨ । ନିମ୍ନଲିଖିତ କେଉଁ କେଉଁ ଶବ୍ଦ ଏ ବକ୍ତୃତାରେ ଅଛି :-- ଗୃହାଳି, ନିଷ୍ପତ୍ତି, ଦୋକାନ, ସୁବିଧା, ଖଜଣା, ଜୋରିମାନା ।

---

## ପେଗୃଙ୍କ କଥାବାର୍ତ୍ତା

ପୂର୍ବକାଳେ ଦ୍ରାବିଡ଼ ଦେଶରେ ଜଣେ ରଜା ଥିଲେ । ସେ ପ୍ରଜାଙ୍କୁ ଭାରି ପୀଡ଼ା ଦେଉଥିଲେ । ତାଙ୍କର ବହୁତ ସୈନ୍ୟ ସାମନ୍ତ ଥାଆନ୍ତି । ରଜା ବି ନିଜେ ଖୁବ୍ ସାହାସୀ । ତାଙ୍କୁ ଯୁଦ୍ଧରେ କେହି ପାରନ୍ତି ନାହିଁ । ଆଖ ପାଖ ରାଜ୍ୟମାନ ସେ ଜିଣି ଯାଉଥାଆନ୍ତି । ଯେଉଁ ରାଜ୍ୟ ଜିଣୁଥାନ୍ତି ତାକୁ ଲୁଟପାଟ୍ କରି ନାରଖାର କରି ପକାଉ ଥାଆନ୍ତି । ଲୋକେ ସହି ନ ପାରି ରାଜ୍ୟ ଛାଡ଼ି ବଣକୁ ପଳାଉଥାନ୍ତି । ଜମିବାଡ଼ି ନଷ୍ଟ ପଡ଼ିଆ ହୋଇ ଜଙ୍ଗଲ ହୋଇ ଯାଉଥାଏ । ଖାଇବାକୁ ନ ପାଇ କି ଲୋକେ ପଡ଼ି ମରି ଯାଉଥାଆନ୍ତି । ଏହିପରି ଠିକରେ ଗାଁ ଆ ମଶାଣିପଦା ହୋଇ ଯାଉଥାଏ ।

ବାପାଙ୍କ ଅମଳରୁ ସେ ରଜାଙ୍କର ଜଣେ ବୁଢ଼ା ମନ୍ତ୍ରୀ ଥିଲେ । ଭଲ ଭାରି ଧାର୍ମିକ । ତାଙ୍କ ବୁଦ୍ଧି ବି ବଡ ତାରିଫ୍ । ବେଳେବେଳେ

ସେ ବସିଥିବ ଥାଆନ୍ତି, ଚାକିରି ଛାଡ଼ି ପଳାଇବେ । କିନ୍ତୁ ପଚିଶ ବର୍ଷ ହେଲା ସେହି ରାଜ୍ୟର ମନ୍ତ୍ରୀ ହୋଇଛନ୍ତି । ମାୟା ମମତା ଛାଡୁଛନ୍ତି କେତେବେଳେ ?

ଦିନେ କଥା ପଡ଼ୁ ପଡ଼ୁ ମନ୍ତ୍ରୀ ରାଜାଙ୍କୁ କହିଲେ ଯେ, ସେ ଚଢ଼େଇଙ୍କ କଥାବାର୍ତ୍ତା ବୁଝିବା ପାଠ ଶିଖିଛନ୍ତି । ରାଜା ତ ହସି ହସି ଗଡ଼ିଗଲେ । ସେ କଥା ରାଜାଙ୍କ ମନକୁ ପାଇଲା ନାହିଁ । ମନ୍ତ୍ରୀ ବି ତୁନି ହେଲେ ।



ରାଜା ବଣବଣ ପାରିଧିକି ଯାଆନ୍ତି । ମନ୍ତ୍ରୀ ବି ସାଙ୍ଗରେ ଥାଆନ୍ତି । ଦିନେ ପାରିଧିରୁ ଫେରୁଛନ୍ତି, ରାଜା ଦେଖିଲେ, ଯୋଡ଼ାଏ-

ତେଗୁ ଗୋଟିଏ ଗଛରେ ଲଗାଲଗି ହୋଇ ବସିଛନ୍ତି । ମନ୍ତ୍ରୀଙ୍କୁ ପରୀକ୍ଷା କରିବାକୁ ରାଜାଙ୍କ ମନ ହେଲା । ରାଜା କହିଲେ "ତୁମେ ପକ୍ଷୀ ଚଢ଼େଇଙ୍କ କଥା ବାର୍ତ୍ତା ବୁଝି ପାର । ଏ ପେଗୁ ଦୁଇଟି କ'ଣ କଥାବାର୍ତ୍ତା ହେଉଛନ୍ତି, କହିଲ, ଦେଖି ?"

ମନ୍ତ୍ରୀ ସେହି ଗଛମୂଳକୁ ଗଲେ ଗଲେ, କାନ ଡେରିଲା ପରି କେତେବେଳେ ଯାଏ ତୁନି ହୋଇ, ତା ପରେ ମୁହଁ ଶୁଖାଇ ରାଜାଙ୍କ ପାଖକୁ ଫେରି ଆସିଲେ । ରାଜା ପଚାରିଲେ, "କହେ, ମୁହଁ ଶୁଖାଇଲ କିଆଁ ? ପେଗୁ କଣ ତୁମକୁ ଗାଳି ଦେଉଛନ୍ତି କି ?"

ମନ୍ତ୍ରୀ କହିଲେ, "ମହାରାଜା, ପେଗୁ ଯାହା କହୁଛନ୍ତି, ତା ମୁହଁରେ ଧରିବାର ନୁହେଁ । ମୁଁ ଚାକର ହୋଇ ଆପଣଙ୍କୁ ସେ କଥା ଶୁଣାଇବି ?" ରାଜା କି ଅଛାଡ଼ନ୍ତି । ସେ କହିଲେ, "କହ, ମୁଁ କଷ୍ଟ କରିବି ନାହିଁ ।"

ରାଜାଙ୍କ କଥା ତ ଆଉ ଅମାନ୍ୟ କରିହେବ ନାହିଁ । ମନ୍ତ୍ରୀ କହିଲେ, "ପେଗୁ ଦୁଇଟି ପୁଅଝିଅ ବାହାଘର କରିବା କଥା ପକାଇଛନ୍ତି । ଗୋଟିକ ପୁଅ, ଆଉ ଗୋଟିଏ ଝିଅକୁ ବାହା ହେବ । ପୁଅବାଲା କହୁଛି, "ମୋ ପୁଅକୁ କନ୍ୟା ସଙ୍ଗେ ପଚିଶଟି ଗାଆଁ ଯୌତୁକ ଦେବାକୁ ହେବ । ସେ ଗାଆଁ ମାନଙ୍କରେ ଏକା କେହି ମଣିଷ ନ ଥିବେ । ମଣିଷ ଅପର ପାରଣା । ମଣିଷ ନ ଥିଲେ ମୋ ପୁଅ ବୋହୂଙ୍କୁ ନେଇ ଆନନ୍ଦରେ ବୁଲିବ ।" କନ୍ୟା ବାଲା କହୁଛି, "ପଚିଶଟି କାହିଁକି, ପାଞ୍ଚଶହ ଗାଆଁ କହିଲେ ଦେଇ । ସେଥିରେ କେହି ମଣିଷ ନ ଥିବେ । ଆମ ରାଜା ଯେତେଦିନ ଅଛନ୍ତି, ସେତେଦିନ ମଣିଷ ନ ଥିବା ଗାଆଁ ନାହାକୁ ଯେତେ । ଏଥିପାଇଁ ଭାବନା କ'ଣ ?"

ମନ୍ତ୍ରୀ ଏହା କହି ତୁନି ହେଲେ । ଏବେ ରାଜାଙ୍କ ମୁହଁ ଲାଲ୍ ହୋଇଗଲା । ସେ ଭାବୁଥିଲେ, "ମୁଁ ଏଡ଼େ ଦୁର୍ଜନ ଯେ ଚଢ଼େଇ ଚିରୁଗୁଣୀ ପର୍ଯ୍ୟନ୍ତ ମୋତେ ହସୁଛନ୍ତି ।" ସେହି ଦିନଠାରୁ ତାଙ୍କ ମନ ବଦଳି ଗଲା । ସେ ପ୍ରଜାଙ୍କ ଭଲ୍ ମନ୍ଦ ବୁଝିଲେ । ଲୋକେ ସୁଖରେ ରହିଲେ ।

### ପ୍ରଶ୍ନ

୧ । ରାଜା ଯେଉଁ ରାଜ୍ୟ ଗୁଡ଼ିକ ଜିଣି ଥାଆନ୍ତି, ସେଗୁଡ଼ିକ ପଦା ହୋଇ ଯାଉଥାଏ କାହିଁକି ? ମନ୍ତ୍ରୀଙ୍କଠାରୁ ପେଚାଙ୍କ କଥାବାର୍ତ୍ତା ଶୁଣିବାକୁ ରାଜା ଏଡ଼େ ଆଗ୍ରହ ଦେଖାଇଲେ କାହିଁକି ? ମନ୍ତ୍ରୀଙ୍କ ଠାରୁ ସେତକ ଶୁଣି ରାଜାଙ୍କ ମନ ବଦଳିଲା କିପରି ?

୨ । ତଳେ ଥିବା ବାକ୍ୟମାନଙ୍କରେ ଶବ୍ଦଗୁଡ଼ିକ ଓଲଟ ପାଲଟ ହୋଇଅଛି । ସେଗୁଡ଼ିକ ସଜାଡ଼ି ଲେଖ :—

(କ) ତାଙ୍କ ବଡ଼ ବୁଦ୍ଧି ତାରିଫ ।

(ଖ) ଖୁବ୍ ଥିଲେ ରାଜା ସାହସୀ ।

(ଗ) ତୁନି ଏହା କହି ମନ୍ତ୍ରୀ ହେଲେ ।

---

### ସମବାୟ

ହରି—ହଇ ରେ ରାମ, ତୋର କାହିଁକି ଅଙ୍ଗ ଜର୍ଜର ହେଲା ? ତୁ ତ ଏପରି କେବେ ଜର୍ଜର କରି ଆସୁ ନାହିଁ ।

ରାମ—(ଟିକିଏ ମୁହଁ ଶୁଖାଇ କରି କହିଲା ), ଘରେ ଅନ୍ନ ଗୁଣ୍ଡିଏ ନ ଥିଲା । ବାପା ବୁଲି ବୁଲି ଦିନ ସନ୍ଧ୍ୟାରେ କିଛି ଘଡ଼ି ବେଳକୁ ଧାନ ଆଣିଲେ । ବୋଉ ତାକୁ କୁଟି କି ଚାଉଳ କଲା । ଭାତ ରନ୍ଧା ହେଲା । ମୁଁ ଖାଇଲି, ଅଧିଲି ।

ଗୋପି—କରେ ଗୁଡ଼ଜଳ କଣ ମିଳୁ ନାହିଁ ମ ? ତୁ ବାପାଙ୍କୁ କହୁ ନାହୁଁ, ଆମ ଗାଁରେ ଯିମିତି ସମବାୟ ଭଣ୍ଡାର ହୋଇଛି, ତମ ଗାଁରେ ସିମିତି ଗୋଟାଏ କରିବେ ।

ହରି—ସେଥିରେ କିଣି ଯେତେବେଳେ ଇଚ୍ଛା ସେତେବେଳେ ଗୁଡ଼ଜଳ ମିଳିବ ?

ଗୋପି—ଖାଲି ଗୁଡ଼ଜଳ କଣ ମ ? ସେ ପରା ଭଣ୍ଡାର । ସେଠି ଗୁଡ଼ଜଳ ଡାଲି, ଲୁଣ, ତେଲ, ମସଲା, ଲୁଗା, ଲୁହା, ହଜାରେ ରକମ ଜମା ହୋଇ ରହୁଛି । ଯାହା ଯେତେବେଳେ ଦରକାର, ସେ ସେତେବେଳେ କିଣିବ !

ହରି—କିମିତି ମ ? ଆମ ଗାଁ ଲୋକେଇ ସାଜି ବସିଲେ ତ ସବୁ ଏକାବେଳକେ କିଣି ଆଣି ତା ଘରେ ଭଣ୍ଡାର କରି ଦେବ । ମହର୍ଗ ବେଳ ଦେଖି ବସିକରି ପଇସା ନେଇ ବାନ୍ଧିବ । ଶସ୍ତା ବେଳେ କହିବ, 'ମୋ ପାଖେ ନାହିଁ, ଯା' । ସେତେବେଳେ?

ଗୋପି—ଅରେ ସେ ପରା ସମବାୟ ଭଣ୍ଡାର । ତାକୁ କହନ୍ତି କୋ-ଅପରେଟିଭ୍ ଷ୍ଟୋର୍ । ସେଥିରୁ କେହି ଲାଭରେ ବିକିବାକୁ ନେବେ କିପରି ? ସେ ନିୟମ ନାହିଁ ।

ହରି—ସେ କିମିତି କଥା ? ଭଣ୍ଡାର କରି ବେପାର କରୁଛନ୍ତି । ବିକିବେ ନାହିଁ ?

ଗୋପି—ଅରେ ନା । ତାକୁ ପରା ସମସ୍ତେ ମିଶି ଟଙ୍କା ଭାଗଦେଇ କରିଛନ୍ତି । ଆଜ ସମସ୍ତେ ଦଶଟଙ୍କା ଲେଖାଏଁ କି ପାଞ୍ଚଟଙ୍କା ଲେଖାଏଁ ଭାଗ ଦେବେ । ସେଇଥିରୁ ଜିନିଷସବୁ କଣାହେବ; ଯେଉଁମାନେ ଭାଗ ଦେଇଥିବେ ତାଙ୍କର ଯାହା ଯାହା ଜିନିଷ ଦରକାର, ସେଇ ସବୁ ଜିନିଷ ସେଠି ରହିବ । ସେଇ ଲାଗ

ଦେଇଥିବା ଲୋକଙ୍କୁ ଅଂଶୀଦାର କହନ୍ତି । ସେଇ ଅଂଶୀଦାରମାନେ ନିଜ ନିଜ ଦରକାର ବେଳେ ଜିନିଷ କିଣିବେ ।

ରାମ—ଅନ୍ୟ କେହି କିଣିବେ ନାହିଁ ?

ଗୋପି—ହଁ କିଣିବେ । ଅଂଶୀଦାରମାନଙ୍କ ସୁବିଧାରେ ପଡ଼ି ଯେବେ ଅନ୍ୟମାନଙ୍କୁ ବିକିବା କଥା ଠିକ୍ ହେବ, ତେବେ ଅନ୍ୟମାନେ କିଣି ପାରିବେ । ନ ହେଲେ ନାହିଁ ।

ହରି—ଅଂଶୀଦାରମାନଙ୍କ ସଭା ହୁଏ କି ?

ଗୋପି—ସବୁ ଅଂଶୀଦାର ଯାକ ସେହି ଦୋକାନର ମାଲିକ ହେଲେ ତ ନା । ସମସ୍ତେ ବସି ମିଶି କାମ ବନ୍ଦୋବସ୍ତ କରି ପାରିବେ । ଦୋକାନ ଚଳାଇବେ । ଲାଭ ବାଣ୍ଟିବେ । ସେଥିପାଇଁ ସଭା ନ ରହିଲେ, ହେବ କିପରି ?

ହରି—ଲାଭ କିଏ ବାଣ୍ଟିବେ ?

ଗୋପି—କହିଲି, ସମସ୍ତେ ତ ହେଲେ ସେ ଦୋକାନର ମାଲିକ । ସେଥିରୁ ଲାଭ ହେଲେ ନେବ କିଏ ? ସେଇ ସମସ୍ତେ ତ ତାହା ବାଣ୍ଟି କରି ନେବେ । କଥା ହେଲା କଣ କି, ଜଣେ ତ ବାହାରିଲେ ଶସ୍ତାରେ ଜିନିଷ କିଣି ବରଷକୁ କି ଛ ମାସକୁ ରଖି ପାରିବ ନାହିଁ । ଜଣକୁ ଏତେ ଟଙ୍କା ମିଳିବ କାହିଁ ? ନିତି କିଣିଖିଆଙ୍କ ଘରେ ଟଙ୍କା କାହିଁ ? ସେଥିପାଇଁ ହୋଇଛି, ଏ ସମବାୟ ଭଣ୍ଡାର ବା ସମବାୟ ଦୋକାନ ।

ହରି—ତେବେ ସମସ୍ତେ ତ ଟଙ୍କା ଗୁନ୍ଦା କରି ଜିନିଷ କିଣିଲେ, ସମସ୍ତେ ତ ବାଣ୍ଟି କରି ନେଇଗଲେ ହୁଅନ୍ତା । ଆଉ ପୁଣି ସେମାନେ ତାକୁ କିଣୁଥିବେ କିଆଁ ? ଲାଭ ଦେଉଥିବେ କିଆଁ ତାକୁ ପୁଣି ବାଣ୍ଟୁଥିବେ କିଆଁ ?

ଗୋପି—ଅରେ, ତୁ ତ ବୁଝିପାରୁ ନାହୁଁ । ସମସ୍ତଙ୍କର କଣ ଏକା ଜିନିଷ ଦରକାର ? ନା ଯେତିକି ଅଂଶ ସେତିକି ଜିନିଷ ଦରକାର ? ଭଣ୍ଡାରରୁ ଟଙ୍କା ଏ ଲାଭରେ ନ ବାଣ୍ଟିଲେ ଭଣ୍ଡାରରେ ଯେଉଁ ଲୋକ ଲାଗିବେ, ତାଙ୍କ ମଜୁରି ଦିଆହେବ କୁଆଡୁ । ଗାଡ଼ିଭଡ଼ା ଦିଆହେବ କୁଆଡୁ ? ପୁଣି ଧାନ ଆଣିବାକୁ ଯେତିକି ଗାଡ଼ିଭଡ଼ା, ମଇଦା ଆଣିବାକୁ କଣ ସେତିକି ଗାଡ଼ିଭଡ଼ା ? ଏହିପରି ଡେରେ କଥା ଅଛି । ଲାଭ ବାଣ୍ଟି ନ ବାଣ୍ଟିଲେ ହେବ କିମିତି ? ସେଥିପାଇଁ ଲାଭ କେତେ ବାଣ୍ଟାହେବ, କାହାର ଲୋକଙ୍କୁ ଦିଆହେବ କି ନା, ଏସବୁ କଥା ସଭାରେ ବୁଝାଇ ହୋଇ ଠିକ ହୁଏ ।

ରାମ—ତେବେ, ଶେଷରେ ଲାଭରୁ ଯାହା ବଳିଲା, ତା ବଣ୍ଟା ହୁଏ ।

ଗୋପି—ହଁ, ମାତ୍ର ସବୁ ବଣ୍ଟା ହୁଏ ନାହିଁ । ସ୍କୁଲ, ଡାକ୍ତରଖାନା, ବାଟସଫା, ପୋଖରୀ ସଫା, ବଳଦେଲ, ପୋଖରୀ ଖୋଳା, କୂଅ ଖୋଳା ପ୍ରଭୃତି ବଡ଼ ବଡ଼ ଧର୍ମାର୍ଥ କାର୍ଯ୍ୟପାଇଁ ଟଙ୍କା ରଖାହୁଏ ।

ରାମ—ଯେ କଥା ଯାହା ହେଉ, ଏପରି ସମବାୟ ଦୋକାନ କଲେତ ବଡ଼ ଭଲ । ଜିନିଷ ସବୁବେଳେ ମିଳିବ । ପୁଣି ଯାହା ଲାଭ ହେବ, ସେତିକ ପୁଣି ଶେଷକୁ ବାଣ୍ଟରେ ମିଳିବ । ସେଥିରୁ ପୁଣି କିଛି ଧର୍ମାର୍ଥ କାର୍ଯ୍ୟହେବ । ଆମ ବାପାହେଲେ କରନ୍ତେ ।

ଗୋପି—ଅରେ, ତମ ବାପା କଣ ଏକାକେ କରିବେ ! ଗାଆଁରେ ସମସ୍ତଙ୍କୁ, ନ ହେଲେ ଦଶ ପଚାଶ ଜଣଙ୍କୁ ଧଇଲେ ତ କରିବେ ।

ରାମ—ହଁ, ସମସ୍ତେ କଣ ଏକମନ ହେବେ, ନା କରିବେ ?

ଗୋପି—ହଁ, ସମସ୍ତେ ଏକମନ ହେବେ । ବୁଝିଲେ କାହିଁକି ନ ହେବେ ? ମୁଁ ଯାଇ ତମ ଗାଁ ଲୋକଙ୍କୁ ବୁଝାଇ କହିଦେବି ।

## ପ୍ରଶ୍ନ

୧ । ସମବାୟ ଭଣ୍ଡାର କହିଲେ ତୁମେ କଣ ବୁଝୁଛ ?

୨ । ସମବାୟ ଭଣ୍ଡାରରୁ ଲୋକମାନେ କି ଉପକାର ପାଆନ୍ତି ?

୩ । ଉନ୍ନତ, କବୁଲ, ହରେକ ରକମ, ମହର୍ଘ, ଅଂଶୀଦାର, ଧର୍ମାର୍ଥ ଏତମନ—ଲଗାଇ ବାକ୍ୟମାନ ରଚନା କର ।

---

## ମାଛି ଓ ବୁଢ଼ିଆଣୀ

ମାଛିଟିଏ ଦେଖି କହୁଛି
ବୁଢିଅଣୀ ବଡର,
"ଅ—ମୋ ଘରକୁ ଦେଖିବୁ
କେଡେ ସଫା ସୁନ୍ଦର ।
ଘେନାଯିବ ତଳେ ଜମରେ
ଘେରି ପାହାଚ ବାଟେ,
ସଜାଡ଼ି ରଖିଛି ଅସନ
ଝୀନ ଚକ୍‌କଣ ଯାଟେ ।
ମାଛି କହେ, "ଯିବି ନାହିଁ ମୁଁ,
କାହିଁ ଡାକୁଛୁ ମୋତେ ?
ତୁମ ଘରେ ପଶି କିଏ ସେ
ଠିକବେ ଫେରିଛି ସତେ !"
"ଅସ ବାବୁ ବାଧି ଯିବଣି
ଉଡ଼ି ଉଡ଼ି ଶୂନ୍ୟରେ,
କହେ ବୁଢିଅଣୀ, ଶୁଅ ହେ
ଟିକେ ପଡ଼ିଛୁ ଘରେ !"

ପଡ଼ିଛି ସେ ଶେଯେ ଗୁଦିର
କେଡ଼େ ସରୁ ସୁନ୍ଦର,
ଚାରିପଟେ ଠଣା ହୋଇଛି
ବୁଣା ପାଟ ଝାଲର ।”
କହେ ମାଛି, “ନାହିଁ ନାହିଁ ହେ
ପୁଣି ଅଛଇ ମୁହିଁ,
ତୁମ ଶେଯେ ଥରେ ଶୋଇଲେ
ଆଉ ଉଠନ୍ତି ନାହିଁ ।”
ବୁଢିଆଣୀ ସେ ତ ଛଉକା,
ପୁଣି କହଇ ଆନ୍ଦ,
“କି କହୁବ ବାପୁ, ତୋ ପାଇଁ
ପ୍ରାଣ ଉଠଇ କାନ୍ଦ ।
ଖାଇବା ଦରବ ବାଛି ମୁଁ
କେତେ ରଖିଛି ଘରେ,
କି ସୁଖ ଲଗନ୍ତା ଯେବେ ତୁ
ଶୁଖ ଦଅନ୍ତୁ ଥରେ ।”
“ନାହିଁରେ ବାବା; ସେ ସୁଆଦ
ଲୋଡ଼ା ନାହିଁ ମୋହର,”
କହେ ମାଛି, “ଶୁଣା ଅଛି ହେ,
ତୁମ ଘର ବେଭାର ।”
ବୁଢିଆଣୀ ସେ କି ଛାଡ଼ୁଛି,
ଏବେ କହେ କପଟେ,
“କେତେ ବୁଦ୍ଧି ବାପ ଧରିଛୁ
ଏଇ ଟିକିଏ ପେଟେ ।

କି ଶୋଭା ତୋ ପକ୍ଷୀ ଚମକ,
କେତେ ଉଜ୍ଜଳ ଆଖି
ଦର୍ପଣ ସଜାଡ଼ି ରଖିଛୁ,
ଥରେ ଯାଆନ୍ତୁ ଦେଖି ।"
"ହଉ ତେବେ" କହେ ସେ ମାଛି,
"ବଡ଼ ଆନନ୍ଦ କଥା .
ବେଳ ନାହିଁ ମୋତେ, ଯାଉଛି,
ସବୁ ଘରେ ରଖିଥା"

ପ୍ରଶ୍ନ

୧ । ବୁଢିଆଣୀ ଏତେ ଆଦର କରି ମାଛିକ ଡାକୁଥିଲା କାହିଁକି ? ମାଛି ତା କଥା ଶୁଣିଲା ନାହିଁ କାହିଁକି ? ବୁଢିଆଣୀ ଯେଉଁ ସୁନ୍ଦର ଘର କଥା କହୁଥିଲା, ସେଇଟି କଅଣ ଓ ସେ ତାହା କାହିଁକି ତିଆର କରିଛି ?

୨ । ସୁଅଦ ଓ ବେଖାର—ଏହି ଶବ୍ଦ ଦୁଇଟି ଥିବା ପଦଟି ବୋଲ ।

---

## ଲୁଗା

ରାମ ବସୁ ବସୁ ହଠାତ୍ ଉଠିପଡ଼ି କହିଲା, "ଅରେ, ଏ ଲୁଗା ଗୁଡ଼ାକ ଖାଲି ବସୁ ବସୁ ଚିରି ଯାଉଚି । ଏ ଲୁଗାଟା ମୋର ଏବେ କୁଆଁର ପୁନିଅକୁ କିଣା ହୋଇଥିଲା । ଦ'ମାସ ହୋଇ ନାହିଁ ପୁର ପୁର ଚିରି ଯାଉଛି ।"

ଶ୍ୟାମ—ତୁ ଯେତେବେଳେ କିଣୁ ନାହୁଁ ! ଶସ୍ତା ବୋଲି ତ କଳ ଲୁଗା କିଣୁଛୁ ଚିରିଯିବ ନାହିଁ ; ଆଉ କଣ ହେବ ? ଜାଣି ନାହୁଁ କି,

କଳରେ ତୂଳାକୁ ଚିଞ୍ଜି କରି ଭଣିଲେ କପା ଫଳ ଭିତରେ ଯେଉଁ ତୂଳାତାର ବା ତନ୍ତୁ ସବୁ ଅଛି, ସେସବୁ ବାହାର ହୋଇ ଛୁଟିଯାଏ । କଳ-ଚରଖାରେ ସେଇଥିରୁ ସୂତା କଟା ହୋଇ କଳ ତନ୍ତରେ ବୁଣା ହୁଏ । ସେଥିରେ ଆଉ ଲୁଗା ଟାଣ ହେବ କୁଆଡ଼ୁ ?

ଦାମ—ତୂଳା ତନ୍ତୁରେ କଣ ଲୁଗା ଟାଣ ହୁଏ ?

ରାମ—ଯେଉଁ ତୂଳାର ତନ୍ତୁ ଯେତିକି ଲମ୍ବ, ସେଥିରେ ସେତେ ସରୁ ସୂତା ହୁଏ; ପୁଣି ଟାଣ ହୁଏ । ତନ୍ତୁ ଗୁଡ଼ିଗଲେ, ସୂତା ସରୁ ହୋଇ ପାରେ, ମାତ୍ର ଟାଣ ହୁଏ ନାହିଁ ।

ଦାମ—ସବୁ ତୂଳାର ତନ୍ତୁ କଣ ଏକା ନୁହେଁ ?

ରାମ—ନା ।

ଦାମ—ବାରିବ କମିତି ?

ରାମ—କପା ଗଛର ବଉଡ଼ା ଫୁଟିଲା ବେଳେ ଗୋଟାଏ ଫୁଟେ ଦେଖିଥିବୁ । ଗୋଟି ଗୋଟି ହୋଇ ବାଳ ପରି ତା ଭିତରେ ତନ୍ତୁ ଥାଏ । ସେଥିରୁ ଗୋଟିଏ ଓଟାରି କରି ମାପି ଦେଖିବୁ । ତେବେ ଜାଣିବୁ, ସେ ତନ୍ତୁର ଲମ୍ବା କେତେ । ବାଉ କପା ଦେଖିଛୁ ?

ଦାମ—ବାଉ କପା କଅଣ ?

ରାମ—ଆରେ, କପା ଅନେକ ପ୍ରକାର । ଜାଣିଥିବୁ, କପା ବର୍ଷକୁ ବର୍ଷେ ରୁଆ ହୁଏ । ଥରେ ଫୁଲ ହୋଇ ବଉଡ଼ା ଧରେ । ବଉଡ଼ା ଫୁଟିଗଲେ ସେ ଗଛ ମରିଯାଏ । ଏଇ କପା ଏ ଦେଶରେ ବହୁତ ହୁଏ । ତାହାର ତନ୍ତୁ ବେଶି ଲମ୍ବା ନୁହେ ଏହାର ଲମ୍ବା ଅଧ ଇଞ୍ଚ ବା ତହିଁରୁ ଟିକଏ ବେଶି । ଏଥିରେ

ମୋଟେ ସୂତା ଓ ମୋଟା ଲୁଗା ହୁଏ । ଆଉ ଗୋଟିଏ ପ୍ରକାର ବାଡ଼ କପା ଅଛି, ତାକୁ ବାଡ଼ କଡ଼ରେ ଲଗାନ୍ତି ।



ଶ୍ୟାମ—ଆମ ଗାଁ ଧଣୀଙ୍କ ଫୁଲ ବଗିଚାରେ ଏ କପା ଗଛ ଅଛି । ସେଥିରେ ବର୍ଷକୁ ବର୍ଷ ବକଡ଼ା ଧରେ, ତୁଳା ଫୁଟେ । କିନ୍ତୁ ଗଛ ମରେ ନାହିଁ । କେତେ କାଳୁ ସେ ଗଛ ବଢ଼ୁଲଣି ।

ରାମ—ତେବେ ଜାଣିଛୁ ତ । ସେଥିରେ ବକଡ଼ା ଭିତରେ ମଞ୍ଜି ଯାକ ମେଞ୍ଚା ହୋଇ ଥାଏ । ତୁଳାଯାକ ସହଜରେ ଅଲଗା ହୋଇ ଯାଏ । ସେ ତୁଳାର ତନ୍ତୁ ଦେଖିବୁ, ତା ପ୍ରାୟ ଦେଢ଼ ଇଞ୍ଚ ଲମ୍ବା । ସେଥିରେ ସରୁ ସୂତା, ମିହି ଲୁଗା ହୁଏ । ପୁଣି ଏବେ କାମ୍ବୋଡ଼ିଆ କପା ବୋଲି ଆଉ ଗୋଟିଏ ପ୍ରକାର କପା ହେଉଛି । ସେ ଗଛରେ ଧଳା, ଗୁର ବର୍ଣ୍ଣ କପା ଫୁଟେ । ବାଡ଼

କପା ପର ତାହାର ତନ୍ତୁ ଲମ୍ବା ନ ହେଲେ ମଧ୍ୟ ଗୃଷ କପା ତନ୍ତୁଠାରୁ ଲମ୍ବ ।

ଦାମ—ଅଚ୍ଛା, କଳରେ ତ ପୁଣି ସରୁ, ମୋଟା ଦୁଇ ପ୍ରକାର ଲୁଗା ହୁଏ । ସେଥିରେ କିଣ ବାଉ କପା ଲାଗେ ?

ଶ୍ୟାମ—ନା, ବାଉ କପା ଏତେ ବେଶି ହୁଏ ନାହିଁ । ତା ତନ୍ତୁ ଲମ୍ବା ହେଲେ ମଧ୍ୟ ସେତେ ଟାଣ ନୁହେଁ । ଅନ୍ୟ ଦେଶରେ ଆମ ଦେଶ କପା ଠାରୁ ଅଧିକ ଭଲ କପା ଗୃଷ କରାଯାଏ ।



ତନ୍ତରେ ଲୁଗା ବୁଣା ହେଉଛି

ଅଫ୍ରିକାର ଇଜିପ୍ଟ ଦେଶରେ ସେଇଁ କପା ଗଛ ହୁଏ, ତା ଚନ୍ତୁ ଦେଢ଼ ଇଞ୍ଚ । ସେଠାର ଜମି କପା ଗଛକୁ ଭାରି ଭଲ । ଅମେରିକାର ଗଛ କପାର ତନ୍ତୁ ସେତେ ବଡ଼ ନ ହେଲେହେଁ ଏ ଦେଶରେ ଗଛ କପାପରି ଛୋଟ ନୁହେଁ । ଏବେ ଇଜିପ୍ଟ ଓ ଅମେରିକାରୁ କପାମଞ୍ଜି ଆଣି ସରକାର ଗଛ କରାଉଛନ୍ତି । ଲୋକେ ବି ଠାଏ ଠାଏ କଲେଣି । ମାଡ୍ରାଜ ପ୍ରଦେଶରେ ବହୁ କାଳରୁ ଗୋଟିଏ ପ୍ରକାର କପାର ଗଛ ହୋଇ ଆସୁଛି । ମାତ୍ର ତାହା ଅଳ୍ପ ହୁଏ । ସେଥିରୁ ତୁଳାରୁ ସେ ଦେଶର କଣ୍ଟାଳମାନେ ଭାରି ସରୁ ସୂତା କାଟନ୍ତି । ହାତ କଟା ସୂତାର ତନ୍ତରେ ବୁଣା ହୋଇ ଯେଉଁ ଲୁଗା ହୁଏ, ତାକୁ ଖଦଡ଼ ଲୁଗା କହନ୍ତି । ମାଡ୍ରାରେ ବହୁ କାଳରୁ ସେଥିପାଇଁ ସରୁ ଖଦଡ଼ ଲୁଗା ହେଉଅଛି । ଗଞ୍ଜାମର ପାଟସାଲିଆମାନେ ଏବେ ସେହି ସରୁ ଖଦଡ଼ ଲୁଗା ବୁଣୁଛନ୍ତି ।

### ପ୍ରଶ୍ନ

୧ । ହାତ କଟା ସୂତାର ଲୁଗା ଓ କଳସୂତାର ଲୁଗା ମଧ୍ୟରେ କେଉଁଟି ମଜବୁତ କଏ ଓ କାହିଁକି ? ସରୁ ଖଦଡ଼ ଲୁଗା କେଉଁଠାରେ ମିଳେ ଓ କାହିଁକି ?

୨ । "କାମ୍ବୋଡ଼ିଆ କପା" ବିଷୟରେ ଗୁରୁ ଧାଡ଼ିରେ ଗୋଟିଏ ରଚନା ଲେଖ ।

---

## ପୁଏ ପୋତାଧନ ପାଇଲେ

ଗୋଟିଏ ଚଷା ଥିଲା । ତାର ବହୁତ ଗୁଡ଼ିଏ ଜମି ବାଡ଼ି । ଗୁଡ଼ାଏ ପୁଅ । ପାଠ ପଢ଼ିବାକୁ ଗୋଟି ଗୋଟି କରି ପୁଅମାନଙ୍କୁ

ସେ ସହରକୁ ପଠାଉଥିଲେ । ଅପେ କାହୁଁ ଚଳନ୍ତି ବାହା ପିଛି ପିଲାଏ ଯାହା ଟଙ୍କା ମାଗୁଥାଆନ୍ତି, ତା ପଠାଉଥାଏ ।

ପିଲାଏ ତ ସହରକୁ ଆସି ଏକାବେଳକେ ବାବୁ ହୋଇଗଲେ । ତାଙ୍କର ପାଠ ହେଲାନାହିଁ । ସମସ୍ତେ ଖଣ୍ଡେ ଖଣ୍ଡେ ସାଇକଲ ଓ ଗୋଟାଏ ଗୋଟାଏ ଟର୍ଚ୍ଚ ଲାଇଟ ଧରି ଗାଆଁକୁ ଆସିଲେ । ଗାଆଁରେ ବି ଖାଲି ଭଲ ପୋଷାକ, ଭଲ ଲୁଗା, ଭଲ ସାବନ, ବାସନା ତେଲ, ଏଇ ସବୁ ତାଙ୍କର ଚିନ୍ତା । ପୋଡ଼ପିଠା କଥା ଗୁଡ଼, ଚାଳଣିଆଚେର ବି ମୁଢ଼ି, ଉଖୁଡ଼ା ଆଉ ରୁଚିଲା ନାହିଁ । ରସଗୋଲା, ସନ୍ଦେଶ ନ ହେଲେ ବି, ମଧୁକପୁରୋଗ, ଲୁଚି, ତରକାରି ଦରକାର । ନ ହେଲେ ସଭ୍ୟ ହେବେ କିପରି ? କେତେବେଳେ ପୁଣି ସହରକୁ ଯିବା ତାଙ୍କର ଦରକାର । ଗାଆଁରେ ସେତେ ମନ ଲାଗେ ନାହିଁ । ଅଲ୍ଲ ସିନେମା, କାଲି ସର୍କସ, ସବୁ ଦେଖିବାପାଇଁ ତାଙ୍କର ପଇସା ଲୋଡ଼ା ।

ବାପା ତ ପିଲାଙ୍କୁ ପଢ଼ାଇବାରେ କେତେ କଷ୍ଟ କରୁଥିଲେ, ତାକୁ ଶୁଝୁଥାଏ କିଏ ? ଆଉ ଏତେ ଦେବ କାହୁଁ ? ପୁଏ ତା ବୁଝନ୍ତି ନାହିଁ । ବେଳେ ବେଳେ ବାପକୁ ଦପଦପ ବତାଇ କହନ୍ତି । ବାପ କିଛି କହେ ନାହିଁ; ସ୍ତ୍ରୀଙ୍କୁ ଆଦର ତା ବଳ ବାଢ଼ି କାମରେ ସେ ଲାଗିଥାଏ । ପୁଏ ବଲ ବାଡ଼କ ଖୁଜାନ୍ତି ନାହିଁ । ସବୁବେଳେ ବସିରୁଅନ୍ତି, ବାପା କେତେ ନାଇଁ କେତେ ଧନ ରଖିଛି ।

କେତେକ କାଳ ଗଲା । ବାପକୁ ଭାରି ଜର ହେଲା । ଜର ଆଉ ଭଲ ହେଲା ନାହିଁ । କିନ୍ତୁ, ପୁଅଙ୍କର ଚିନ୍ତା ପଶିଲା । ପୁଏ କହନ୍ତି ବସିଲେ, ବାପା ଯେତେ ଆମଦାନି କରନ୍ତି, ସେଥିରେ ସେ ନିଶ୍ଚେ ଟଙ୍କା ପୋତି ରଖିଛନ୍ତି ।

ବଇଦ ଆସୁଥାନ୍ତି । ଶେଷକୁ ବଇଦ ଛାଡ଼ିବା ବେଳ ପଡ଼ିଲା । ବୁଢ଼ା ମନରେ ଭାରି ଦୁଃଖ, ପୁଅ କିଛି ବୁଝିଲେ ନାହିଁ କଅଣ କରିବେ ? ସେ ପୁଅଙ୍କୁ ଶେଯ ପାଖକୁ ଡାକିଲା; ଟଙ୍କାର କଥା ବୁଝାଇ କହିଲା । ପୁଅଙ୍କୁ ସେ ସବୁ କିଛି ବୁଝା ଲାଗିଲା ନାହିଁ । ସମସ୍ତେ ମୁହଁ ମୋଡ଼ି ଦେଇ ଚାଲିଗଲେ ।

ପୁଅ ଖାଲି ବିଚାରୁ ଥାଆନ୍ତି, ଗୋଟା ଟଙ୍କା ପୋତା ରଖିବା କଥା କାହିଁକି କହୁ ନାହାନ୍ତି ? ନ କହି ମରିଗଲେ ତ ଆଉ ମିଳିବ ନାହିଁ । କଅଣ କରିବା ?

ଶେଷକୁ ବାପାଙ୍କ ଦେହାନ୍ତର ବେଳ ହୋଇ ଆସିଲା । ପୁଅ ଆଉ ସମ୍ଭାଳି ପାରିଲେ ନାହିଁ; ଯାଇ ପଚାରିଲେ, "ବାପା ଟଙ୍କା ସୁନା ଯାକ ସବୁ କେଉଁଠି ପୋତିଛ ?" ବୁଢ଼ା ବହୁତ କଷ୍ଟରେ କହିଲା, "ସବୁ ରଖିଛି ବାଲିରେ ।" ବୁଢ଼ା ଆଉ କିଛି କହି ପାରିଲା ନାହିଁ । ଟିକିଏ ପରେ ତା ପ୍ରାଣ ଛାଡ଼ିଗଲା ।

ପୁଅ ଏବେ କରନ୍ତି କଣ ? ବାଲିରେ କେଉଁଠି ଟଙ୍କା ପୋତା ହୋଇଛି, ତା ଏବେ ପାଇବେ କିପରି ? ସବୁ ଜାଣିଡ଼ାକୁ ପଚାରିବେ ? ସବୁ ଜାଣି ଯେବେ ଠିକଣା କଥାଟି ନ କହି ଆଗେ ଗାତରେ ଖୋଳି ନେଇଯିବ, ତେବେ ଉପାୟ କଅଣ ? ସେ କଥା ହେବ ନାହିଁ: ତାହାକୁ କହିବା ଠିକ୍ ନୁହେ ।

ପୁଅ ବିଚାରିଲେ, "ଆସ ଚାଲ, ବାଲିଯାକ ଚଷିବା । ଟଙ୍କା ଯେଉଁଠି ଥିବ, ଜଣା ପଡ଼ିଯିବ ।"

ସମସ୍ତେ ମିଳି ବାଲିଯାକ ଖୁବ୍ ଗଭୀରଆ କରି ଚାଷ କଲେ । ଟଙ୍କା ତ ମିଳିଲା ନାହିଁ; ବିଚାରିଲେ, "ଚାଷ ତ ହେଲାଣି, ବୁଣି ଦେବା ।" ସେ ବର୍ଷ ଭଲ ଚାଷ ପାଇଁ ଧାନରୁ ଭାରି ଖେଜ ହେଲା ।

ଘର ଖର୍ଚ୍ଚ, ଖଜଣା ବାଦ୍ ତାଙ୍କୁ ବହୁତ ଟଙ୍କା ମିଳିଲା । ତହୁଁ ଆର ବର୍ଷକୁ ଫେର୍ ସେହିପରି ଚଷିଲେ । ଫେର୍ ଫସଲରୁ ଟଙ୍କା ମିଳିଲା । ବାପା ଏକୁଟିଆ ଯାହା କରି ପାରୁ ନ ଥିଲା, ଚାରି ପୁଏ ମିଶି ତା ଠାରୁ ଢେର୍ ଭଲ କଲେ । କେତେ ବର୍ଷ ବିତିଗଲା । ପୁଅଙ୍କ ବାବୁଆନା ଦିନେ ଘୁଞ୍ଚିଗଲା । କାହାକୁ ନ କହି ବିଲ୍ ଖୋଳି ଟଙ୍କା ଖୋଜିଲେ କି ଆଉ ବାବୁଆନା ରହେ ?

ପୁଏ ଏବେ ବୁଝିଲେ, ବାପ ଯାହା 'ବିଲରେ ସବୁ ରଖିଛି' ବୋଲି କହିଥିଲା, ସେ କଥା ମିଛ । ବିଲକୁ ଭଲ ଚାଷ କରି ସେଥିରେ ଲାଗିଲେ ଟଙ୍କା ମିଳେ ।

## ପ୍ରଶ୍ନ

୧ । ଚାଷୀର ପୁଅମାନେ କେତେ ବାବୁଗିରି କରୁଥିଲେ କହିବ ? ସେମାନେ କୋଉଠା ଧନ ଖୋଜି ପାଇଲେ ? ବାପ କଣ ମତଲବରେ ବିଲରେ ସବୁ ପୋତା ରଖିଥିଲା ?

୨ । କହୁଅ ଗଳ୍ପଟି, ତାହାପରେ, ଏ ପଦ ବତାଇ ଦିଅନ୍ତୁ, ଘଣ୍ଟାନ୍ତର ବେଳ— ଏ ଗୁଡ଼ିକରୁ କଅଣ ବୁଝିଲ ?

---

## ଆମ ଖାଦ୍ୟ

ଚାଉଳ, ଗହମ, ମକା, ଯଅ ପ୍ରଭୃତି କେତେ ପଦାର୍ଥ ଆମ୍ଭେମାନେ ଖାଉଁ । ଧାନ ଉପରୁ ଚୋପା କାଢି ଦେଲେ ଚାଉଳ ହୁଏ । କେତେ ଚାଉଳ ଉପରେ ନାଲି ବୋଳ, ଆଉ କେତେ ଚାଉଳରେ ଧଳା ବା ଅଳ୍ପ ହଳଦିଆ ବୋଳ ଥାଏ । ଏହି ବୋଳଟି ଥାଇ ଚାଉଳ ଖାଇବା ଭଲ । ଢିଙ୍କିରେ ଚାଉଳ କାଣ୍ଡିଲେ ଏହି ବୋଳରୁ କେତେକ ଝାଣ୍ଡିଆ କୁଣ୍ଡା ହୋଇଯାଏ । ବାକି କିଛି ରହିଥାଏ ।

ସବୁଜିଆ ବୋଲ ଥିଲେ ଅସୁଆଦ ଲାଗନ୍ତି; ଖାଇ ହୁଅନ୍ତି ନାହିଁ । ସେଥିପାଇଁ ଗୁଞ୍ଜଳକୁ କାଣ୍ଡନ୍ତି ।



ଧାନଗଛ ଓ ଧାନ ସିସା

ମାସ୍ତ ଏବେ କଳରେ ଛଁଆର ଗୁଞ୍ଜଳ ମିଳୁଛି । ବଜାରରେ ତା ବିକ୍ରି ହୁଏ । ବଡ଼ ସହରମାନଙ୍କରେ ଖାଲି କଳ ଗୁଞ୍ଜଳ ଏବେ ମିଳେ । କଳରେ ପ୍ରସ୍ତୁତ ଗୁଞ୍ଜଳର ସମୁଦାୟ ବୋଲ ଧୋଇଛୁଅ- ଛୁଟିରେ ଗୁଣ୍ଡି ହୋଇଯାଏ । ଲୋକେ କହନ୍ତି, ଏ ଗୁଞ୍ଜଳ ଖାଇଲେ 'ବେରି ବେରି' ବୋଲି ଗୋଟାଏ ଖରାପ ରୋଗ ହୁଏ । ଏହି ରୋଗରେ ଗୋଡ଼, ହାତ, ମୁହଁ, ଦେହ କ୍ରମେ ଫୁଲିଯାଏ ଓ ଶେଷକୁ ଲୋକ ମରିଯାଏ ।

ଗହମ ଦାନା ଚୂରଦେଲେ ସେଇ ଗୁଣ୍ଡାକୁ ଅଟା କହନ୍ତି । ଦାନାର ବୋଲ ଚଞ୍ଚା ହୋଇ କଳରେ ଚୂର୍ ହେଲେ ମଇଦା ହୁଏ । ନ ଚୂରି ଗୋଲଦାନା କଲେ ସୁଜି ହୁଏ । ଲୋକେ ଅଟାକୁ ରୁଟି କରି ଖାଆନ୍ତି । ଘିଅରେ ପୁଆଇ ପୁରି କରନ୍ତି । ଘିଅ ଦେଇ ସେକିଲେ ପରଟା ହୁଏ । ଅଟା ବା ମଇଦାକୁ ଘିଅ ଦେଇ ଚକଟି ଯେଉଁ ସାନ ସାନ ପତଳା ପୁରି କରନ୍ତି, ତାକୁ ଲୁଚି କୁହାଯାଏ । ସୁଜିରେ ମହନଭୋଗ ଆଦି କେତେ ପ୍ରକାର ମିଷ୍ଟାନ୍ନ ତିଆରି ହୁଏ ।

ମାତ୍ର ଏଇ ରୁଟି, ପୁରି ପ୍ରଭୃତି କଳ ଅଟା ବା ମଇଦାରେ ନ କରି ହାତ ପେଷା ଅଟାରେ କରି ଖାଇବା ଭଲ। କଳ ଅଟାରେ ବୋଲ ନ ଥାଏ, ତେଣୁ ରୋଗ ହୁଏ। ଏବେ କଳବାଲାମାନେ ଚଞ୍ଚା ବୋଲକୁ କଳ ଅଟାରେ ମିଶାଇ ହାତପେଷା ଅଟା ପରି କରି ବିକୁଛନ୍ତି; ମାତ୍ର ଏଥିରେ ବୋଲଗୁଣ୍ଡା ସାଙ୍ଗେ କେତେ ମଇଳା ମିଶିଥାଏ। ତେଣୁ ହାତପେଷା ଅଟା ସବୁଠାରୁ ଭଲ


ଗହମ ସୀସା

ଗହମ ଛଡ଼ା ମକା, ଯଅ ପ୍ରଭୃତିରେ ଏହିପରି ଅଟା ହୁଏ। ମାତ୍ର ସେ ସବୁଥିରେ ଅଟାଠାରୁ ବେଶି ହୁଏ ଛତୁ। ଦାନାକୁ ଭଜା ଚୂରିଲେ ତାକୁ ଛତୁ କହନ୍ତି। ବିହାର, ପଞ୍ଜାବ ପ୍ରଭୃତିରେ ଗରିବ ଲୋକେ ଏଇ ଛତୁରେ ପାଣି ପକାଇ, ମିଳିଲେ ଗୁଡ଼ ଗୋଳାଇ, ନ ହେଲେ ଲୁଣ ଲଙ୍କା ମରିଚ ଲଗାଇ ଖାଆନ୍ତି। ଏହା ଆମ ଦେଶରେ ପଖାଳ ଖାଇଲା ପରି।

ଜାପାନରେ କେତେକ ଲୋକ ଗୁହଳକୁ ଭାତ ନ କରି ଅଟା କରି ସିଝାଇ ଖାଆନ୍ତି। ଆମେ ମଧ୍ୟ ଗୁହଳ ଚୂନାରେ ପିଠା କରୁ। ଗୁହଳକୁ ଉତୁସାଇ ଢିଙ୍କିରେ କୁଟି କୁଲାରେ ଝାଡ଼ି ଚୂନା କରାଯାଏ। ଆମେ ଏ ଗୁହଳ ଗୁଣ୍ଡାକୁ ଅଟା ବା ମଇଦା ନ କହି ଗୁହଳ ଚୂନା ବା ଖାଲି 'ଚୂନା' କହୁ। ଏହି ଗୁହଳ ଚୂନାରେ ଦକ୍ଷିଣୀ ଲୋକେ ସୁନ୍ଦର ଖିରି କରନ୍ତି। ତାକୁ ସେମାନେ 'ଫେରନି' କହନ୍ତି। ଆମେ ଗୋଟାଗୁହଳ ଦୁଧରେ ଖୁବ୍ ସିଝାଇ ଖିରି କରୁ। ଗହମ ଅଟାରେ ବ

ଖିର୍ ହୁଏ । ବତୁଆ ଗୁଡ଼ଲକୁ ବତୁଆ ଗୈପାଚଢ଼ା ବର ସଙ୍ଗେ ବାଟି ପିଠୋଉ କରି ଅଟେମ ଆଧାରରେ ସିଝାଇ ଇଣ୍ଡୁରି ପିଠା କରନ୍ତି । ଏହି ଇଣ୍ଡୁରି ପିଠା ଖାଇବାକୁ ଭଲ ଲାଗେ ।

ମାଣ୍ଡିଆ ଦାନା ଭିତରୁ ଚୋପା କାଢ଼ି ହୁଏ ନାହିଁ । ମାଣ୍ଡିଆକୁ ଚୂର ପାଣିରେ ସିଝାଇ ଜାଉ କରି ଲୁଣ ଓ ଦହି ପକାଇ ଖାଆନ୍ତି । ସେପରି ଖାଇବା ମନ୍ଦ ନୁହେ ।

ଯଅ ବା ଯବକୁ ଇଂରେଜୀରେ କହନ୍ତି ବାର୍ଲି । ରୋଗୀମାନେ ଏହି ବାର୍ଲି ଖାଆନ୍ତି । ଏହି ବାର୍ଲି ଦୁଇପ୍ରକାର ହୁଏ । ଗୋଟିଏ ପ୍ରକାର ହେଉଛି, ଯଅର ପଇଦା ବା ଅଟା, ଅନ୍ୟ ଗୋଟିଏ ପ୍ରକାର ହେଉଛି, ସଫା ଯଅ ଗୁଣ୍ଡଳ । ଏ ସବୁ ବଡ଼ ବଡ଼ ଗହମ ପରି । ସିଝାଇଲେ ଭାତ ପରି ହୁଏ । ଏହି ଭାତରୁ ଦେଇଦେଲେ ବାହାରିବା ପାଣି ନିଗାଡ଼ି ରୋଗୀମାନେ ଖାଆନ୍ତି, ଭାତ ଫିଙ୍ଗି ଦିଅନ୍ତି । ଏହି ବାର୍ଲିକୁ ଇଂରେଜୀରେ କହନ୍ତି 'ପର୍ଲ ବାର୍ଲି' ବା 'ମୁକ୍ତାଯବ' ।

## ପ୍ରଶ୍ନ

୧ । ଧାନ, ଗହମ ଓ ମାଣ୍ଡିଆକୁ ଆମ୍ଭେମାନେ କି କି ପ୍ରକାରେ ଖାଉ ? ଜାପାନମାନେ ଗୁଡ଼ଲକୁ କିପରି ଖାଆନ୍ତି ? ବାର୍ଲି କଅଣ ? ତାହା ଆମ୍ଭମାନଙ୍କର କି କାର୍ଯ୍ୟରେ ଲାଗେ ?

୨ । କଳ ଗୁଣ୍ଡଳ ଓ ଢିଙ୍କିକୁଟା ଗୁଣ୍ଡଳ ମଧ୍ୟରୁ କେଉଁଟି ଖାଇବା ଭଲ ଓ କାହିଁକି ?

୩ । 'ବେରି ବେରି' ରୋଗ କାହିଁକି ହୁଏ ଓ କିପରି ହୁଏ ?

୪ । କାଣ୍ଡେଲେ, ଅସୁଆଦ, ଗୁଞ୍ଜି, ପୁଅର, ବତୁରଇ, ଅଥାଳ, ଫିଙ୍ଗି ନଗାଡ଼—ପ୍ରତ୍ୟେକକୁ ଲଗାଇ ବାକ୍ୟମାନ ରଚନା କର ।

# ହଣ୍ଡିଆ ଲୁଚିବା କଥା

ବାପା ଯେତେବେଳେ, ବସନ୍ତି ଖାଇ
ହଣ୍ଡିଅକୁ ଖୋଜନ୍ତି ହେ,
ଯେତେ ଯେଉଁ ଅଡ଼େ ଖୋଜନ୍ତି ହେଲେ
ହଣ୍ଡିଅ କି ଆଉ ଦିଶେ ?
ଦିନେ ବାପା ଯେବେ ଗାଧୋଇ ଆସି
କହି ଦେଲେ, 'ଭାତ ବାଢ଼',
ମାଆକୁ କହିଲି, "ଲୁଚି ଯିବି ମୁଁ,
ଠିଆ ହେବୁ କର ଆଡ଼,
ଖୋଜି ହେବେ ବାପା, କହିବୁ ନାହିଁ,
ଦେଖିବୁ କେମିତି ହେବ ?"
ଏହା କହି କଲି ହଣ୍ଡିଅ ଚିଲି
କବାଟ କୁଣ୍ଡକୁ ଠାବ ।
ଓଳିଅ ପଛରେ କବାଟ କୁଣେ
ଲୁଚି ଲୁଚି ପଶି ଗୁଅ,
ଲୁଗାଟିଏ ପାରି ପ୍ରଲମ୍ବ ଶୋଇ
ଅଳପେ ଘୋଡ଼ାଇ ମୁହିଁ ।
ଖାଇବାକୁ ଏବେ ବସିଲେ ବାପା,
ଖୋଜିଲେ, "ହଣ୍ଡିଅ କାହିଁ ?"
ପଚାରିଲେ, "ଗୁଅ, କୁଆଡ଼େ ଗଲା ?
ଦାଣ୍ଡରେ ତ ଖେଳୁ ନାହିଁ ?"
ବୋଇଲେ, "ଦାଣ୍ଡକୁ ଯାଇନ୍ତା କାହିଁ ?
ଦୁଇ ପହରିଆ ବେଳ;"
ଏହା କହୁ ଖୋଜି ଖୋଜି ବୁଲିଲେ
ଅନ୍ଧ ସନ୍ଧ ଘରେ ତଳ ।

କବାଟେ କୁଣକୁ ଗୃହିଁଲେ ଥରେ;
ହସିଲ ହସିଲ ହୋଇ
ମାଆକୁ, କହିଲେ, "ହରିଆ ଟେଳେବ
ଟଡଥିବ ଅଙ୍କି ଖୋଇ ।"
ଗୁଲ ଭକ୍ତ ଏବେ ହରିଆ ଝଟି
ମାଥା ପଗୁଅଚେଡଠିଅି,
ଲାଳି-ମାର ମାର ଝଠଲ ହସି
ବୋଇଲି, "ଶୁଅନ୍ତ କିଅଁ ?"
ହସି-ହସି ଯାଇଁ ବପାଙ୍କ କୋଡ
ଟାଉବାକୁ ଗଲ ବସି,
"ଟେଙ୍ଗଠ ପୁଲ କା ପୁଅଟି ମୋର ?"
ବପା ପଗୁରଲେ ହସି ।

ପ୍ରଶ୍ନ

୧ । ହରିଆ ଲୁଚଲ କାହିଁକି ? ହରିଆ ଶୋଇ ପଡ଼ିଥିବ ବୋଲି ବାପା କାହିଁକି କହୁଥିଲେ ? ତାହା ଶୁଣି ହରିଆ କଣ କଲା ?
୨ । ପଦ୍ୟଟିର ଶେଷ ଗୃହପଦ ମୁହଁେ ମୁହେଁ ବୋଲ ।

---

## ପଣ୍ଡିତ ହରିହର ଦାସ

ସେକାଳେ ଲୋକେ ବଙ୍ଗଳା ପାଠ ପଢ଼ିବାକୁ ଘୃଣା କରୁଥିଲେ । ଆଜି କାଲି ପରି ସ୍କୁଲ ବି ନ ଥିଲା । ଲୋକେ ଗୁହାଳୀରେ ନାହାକ ବା ଅବଧାନ ପାଖେ ଅକ୍ଷର, ପଣିକିଆ, ଫଳା, ବନା, କଡାଗଣ୍ଡା ଗୁଣ୍ଠିବଣ୍ଟା, ଶଗାଧ୍ୱ, ଓଡାଙ୍କ, ହରଗୁଣ, ପେଡ଼ାମିଶା, କୁଟ୍ଟା, କବିବନ୍ଧି ( ନଯୁ ବନ୍ଧୁ ) ପଢିସାରି, ସିରସ୍ତାଦେ ହିସାବ ଲେଖିବା ଶିଖିପଡା

ଆଉଥିଲେ । ତା ପରେ ଭାଗବତ ପଢୁଥିଲେ । ତାଳପତ୍ର ଖେଦା ଲେଖି, ତାକୁ ବାଛ, କେହି କେହି ପେଠ ପୋଡ଼ୁଥିଲେ ।

ଆଉ କେତେ ଲୋକ ସଂସ୍କୃତ ପଢୁଥିଲେ । ସଂସ୍କୃତ ପଢିବାପାଇଁ କାଶୀ, ନବଦ୍ୱୀପ ପ୍ରଭୃତି ସ୍ଥାନକୁ ମଧ୍ୟ ଯାଉଥିଲେ । ସେ ସବୁଠାରେ ପଣ୍ଡିତମାନଙ୍କ ସଙ୍ଗେ ଯୁକ୍ତି ତର୍କ ବା ଶାସ୍ତ୍ର ଆଲୋଚନା କରୁଥିଲେ ।

ହରିହର ଦାସ ଏହିପରି ଜଣେ ସଂସ୍କୃତ ପଢା ବଡ଼ ପଣ୍ଡିତ ଥିଲେ । ପୁରୀଜିଲ୍ଲା ସତ୍ୟବାଦୀ ପାଖ ଶ୍ରୀ ରାମଚନ୍ଦ୍ରପୁର ଗ୍ରାମରେ ସେ ଜନ୍ମ ହୋଇଥିଲେ । ସେ ନିଜ ପାଣ୍ଡିତ୍ୟ ବଳରେ ନବଦ୍ୱୀପ, କଲିକତା ପ୍ରଭୃତିରେ ଭାରି ନାଆଁ କରିଥିଲେ; ରାଜଦରବାରମାନଙ୍କରେ ବହୁତ ସମ୍ମାନ ଓ ହଜାର ହଜାର ଟଙ୍କା ବିଦାୟ ପାଉଥିଲେ ।

ମାତ୍ର ସେ ଦେଖିଲେ, ସ୍କୁଲ ବସାଇ ଲୋକଙ୍କୁ ସାହିତ୍ୟ, ଗଣିତ, ଭୂଗୋଳ, ଇତିହାସ, ବିଜ୍ଞାନ ପ୍ରଭୃତି ନ ପଢ଼ାଇଲେ ଦେଶର ଉନ୍ନତି ହେବ ନାହିଁ । ଲୋକେ ଇଂରେଜୀ ପଢିବା ମଧ୍ୟ ଦରକାର, ଏହା ସେ ବୁଝିଥିଲେ । ସେଥିପାଇଁ ସେ ନିଜେ ନିଜେ ଘରେ ଇଂରେଜୀ ପଢିଲେ । ଖାଲି ଇଂରେଜୀ ନୁହେଁ, ସେ ପ୍ରାଚୀନ ଗ୍ରୀସ୍ ଦେଶର ଗ୍ରୀକ୍ ଭାଷା ଓ ସାହିତ୍ୟ ମଧ୍ୟ ଭଲ ଜାଣିଥିଲେ ।

ଆପେ ଏହା ସବୁ ପଢ଼ିସାରି ତାକୁ ସେ ଅନ୍ୟମାନଙ୍କ ଉପକାରରେ ଲଗାଇଲେ । ସେତେବେଳର ଜିଲ୍ଲା ମେଜେଷ୍ଟର ସାହେବମାନେ ତାଙ୍କୁ ବଡ଼ ଖାତିର କଲେ । କମିଶନର ଓ ବଙ୍ଗ ବିହାର ଓଡ଼ିଶାର ଶିକ୍ଷା ବିଭାଗର ବଡ଼ ସାହେବମାନଙ୍କ ସଙ୍ଗେ ତାଙ୍କର ଭାବ ହେଲା । ସେମାନଙ୍କ ସାହାଯ୍ୟରେ ସେ ଗ୍ରାମମାନଙ୍କରେ ସ୍କୁଲ ବସାଇଲେ । ସ୍କୁଲରେ ପଢିଲେ, ଏପରି କି କାଗଜ ଛୁଇଁଲେ ଧର୍ମ ଓ ଜାତି ଯିବ ବୋଲି ଲୋକେ ଭାରି ଆପତ୍ତି କଲେ । ସେତେବେଳେ ତାଙ୍କୁ ଏକ-ଘରକିଆ କରିବାକୁ ବସିଲେ । କିନ୍ତୁ ସେ କିଛି ମାନିଲେ ନାହିଁ

ପାଦ୍ରୀ ସାହେବମାନେ ସେତେବେଳେ ସ୍ଥାନେ ସ୍ଥାନେ ବଜାରରେ ବାଇବେଲ ପଢ଼ାଉଥିଲେ, ଜଗନ୍ନାଥଙ୍କୁ ନିନ୍ଦା କରି କେତେ ଲୋକଙ୍କୁ ଭୁଲାଇ ଖ୍ରୀଷ୍ଟିଆନ କରାଇ ନେଉଥିଲେ । ଲୋକଙ୍କର ବଡ଼ ଭୟ ଥାଏ । ଏହା ଜାଣି ହରିହର ନିଜେ ଘୋଡ଼ାଚଢ଼ା ଶିଖି ନେଇ ରହିଲେ । ଭାବି କି ନା, ସେତେବେଳେ ରେଲ, ସାଇକେଲ କିଛି ନ ଥିଲା । ସେହି ଘୋଡ଼ାରେ ଚଢ଼ି ହରିହର ଗ୍ରାମେ ଗ୍ରାମେ ବୁଲି ଲୋକଙ୍କୁ ବୁଝାଉଥିଲେ । ସେ ସୁନ୍ଦର ବକ୍ତୃତା ଦେଇ ବୁଝାଇ ପାରୁଥିଲେ । ତାଙ୍କୁ ମଧ୍ୟ ସଂସ୍କୃତ ଶାସ୍ତ୍ର ସବୁ ଜଣା ଥିବାରୁ ସେ କାଳର ବଡ଼ ବଡ଼ ପଣ୍ଡିତ ଓ ଜାଣିବା ଶୁଣିବା ଲୋକେ ତାଙ୍କ ବକ୍ତୃତା ଶୁଣି କିଛି କହି ପାରୁ ନ ଥିଲେ । କେତେ କେତେ ବୁଢ଼ା ବୁଢ଼ା ଜାଣିବା ଶୁଣିବା ଲୋକ ତାଙ୍କ ପଥରେ ଚଳିଲେ । ମାତ୍ର ବେଶି ମାତିଲେ ଟୋକାଏ । ବୁଢ଼ାମାନଙ୍କ ଭୟରେ କେତେ କେତେ ଯୁବକ ଓ ବାଳକ ସେତେବେଳେ ଘର ଛାଡ଼ି ତାଙ୍କ ସାଥି ଧରିଲେ ।

ହରିହର ପୁରୀରେ ଘରଭଡ଼ା ନେଇ ନିଜ ଖର୍ଚ୍ଚରେ ସେହି ଯୁବକ ଓ ବାଳକମାନଙ୍କୁ ସେଥିରେ ରଖି ପୁରୀରେ ଏକ ବଡ଼ ସ୍କୁଲ ଆରମ୍ଭ କଲେ । ସେହି ସ୍କୁଲ ବଢ଼ି ବଢ଼ି ଏବେ ପୁରୀର ସଂସ୍କୃତ କଲେଜ ହୋଇଅଛି ।

ନିଜେ ରାଜଦ୍ୱାର ବୁଲି ସେ ଯାହା ଚାନ୍ଦା ପ୍ରଭୃତିରେ ରୋଜଗାର କରୁଥିଲେ, ତା ସବୁ ଏହି ସ୍କୁଲ ଓ ପ୍ରଚାରରେ ଖର୍ଚ୍ଚ କରୁଥିଲେ । ଗ୍ରାମମାନଙ୍କରେ ପ୍ରଚାର କଲାବେଳେ ସେଠାରେ ମିଳୁଥିବା ଟଙ୍କା ସେସବୁ ବାଣ୍ଟୁଥିଲେ । ଏହି ପୁରୀ ସ୍କୁଲ ବିଷୟ ଶୁଣି ଥରେ ସେ ଅଯୋଧ୍ୟା ପାଖ ବଳରାମପୁର ଯାଇଥିଲେ । ସେଠା ରାଜାଙ୍କଠାରୁ ସେ ପଞ୍ଚାବନ ଶହ ଟଙ୍କା ଚାନ୍ଦା ପାଇଲେ । ସେସବୁ ସେ ଏହି ସ୍କୁଲରେ ଦେଇ ଦେଲେ । ସେହି ରାଜାଙ୍କର ପୁରୀ

ଦେଶକାଳରେ ଭୋଗ କରିବା ପାଇଁ ବର୍ଷକୁ ତେରଶହ ଟଙ୍କା ଖଞ୍ଜାଥିଲେ ।
ସେ ଟଙ୍କା ପୁରୀପଣ୍ଡାଙ୍କ ପାଖକୁ ଆସୁଥିଲା । ହରିହର ପୁଣି ଯାଇ ଏହି
ଟଙ୍କାତକ ସେହି ସ୍କୁଲର ଛାତ୍ରମାନଙ୍କ ବୃତ୍ତିରେ ଲଗାଇ ଦେଇଥିଲେ ।
ଓଡ଼ିଶାର ନଅଙ୍କ ଦୁର୍ଭିକ୍ଷର ପର ବର୍ଷ ଏହି ସ୍କୁଲ ସ୍ଥାପିତ ହୋଇଥିଲା ।

ତା ପରେ ଢେଙ୍କାନାଳ, ନୟାଗଡ଼ ପ୍ରଭୃତି ରାଜାଙ୍କଠାରୁ ସେ
କେତେ ଟଙ୍କା ଚାନ୍ଦା ସଂଗ୍ରହ କରି ସ୍କୁଲକୁ ଦେଲେ । ପୁରୀରେ ସେହି
ସ୍କୁଲକୁ ଗୋଟିଏ ବଡ଼ କଲେଜ କରିବା ତାଙ୍କର ଇଚ୍ଛା ଥିଲା ।
ସେଥିପାଇଁ ଚାନ୍ଦାସଂଗ୍ରହ କରିବାକୁ ସେ ଭାରତବର୍ଷବୁଲି ବାହାରିଲେ ।
ପୂର୍ବ ବର୍ଷ କଲିକତାଠାରେ ଦେଶର ଅନେକ ବଡ଼ ବଡ଼ ଲୋକ ତାଙ୍କର
ଏହି କଳ୍ପନା ଶୁଣିଥିଲେ । ସେମାନେ ବଡ଼ ଆନନ୍ଦରେ ସାହାଯ୍ୟ
କରିବେ ବୋଲି କହିଥିଲେ । କିନ୍ତୁ ତାହା ହୋଇ ପାରିଲା ନାହିଁ ।

କଲିକତାରେ ହଠାତ ତାଙ୍କର କ୍ଷୟ ରୋଗ ହେଲା, ପଥରେ
ସେ ଯାଗଲ ୨ ମୃକ ହୋଇଗଲେ । ଚିକିତ୍ସାରେ କିଛିଏ ଭଲ
ହୋଇଥିଲେ; କିନ୍ତୁ ଆପଣା ଲୋକମାନେ ତାଙ୍କୁ ସେଠାରୁ କଟକ ଓ
କଟକରୁ ପୁରୀ ନେଇ ଆସିଲେ । ପୁରୀରେ ସେ ୩୨ ବର୍ଷ ବୟସରେ
ପ୍ରାଣତ୍ୟାଗ କଲେ । ୨୪ ବର୍ଷରୁ ୩୨ ବର୍ଷଯାଏ ଛଅବର୍ଷ ପାଏ
ସେ କାର୍ଯ୍ୟ କରିଥିଲେ । ସବୁବେଳେ ତାଙ୍କର ଗୋଟିଏ ଚିନ୍ତାଥିଲା--
ଦେଶର ଭଲ କରିବା । ସେଥିପାଇଁ ନିଜର ଘରଦ୍ୱାର କଥା
କେବେ ଭାବୁ ନ ଥିଲେ ।

ପ୍ରଶ୍ନ

୧ । ପଣ୍ଡିତ ହରିହର ଦାସ ତାଙ୍କ ଘରଦ୍ୱାର କଥା କାହିଁକି ବୁଝୁ ନ ଥିଲେ ? ତାଙ୍କର କେଉଁ କୀର୍ତ୍ତି ବର୍ତ୍ତମାନ ଓଡ଼ିଶାରେ ଅଛି ?

୨ । ପୂର୍ବକାଳରେ ଲୋକେ ପିଲାଙ୍କୁ ଇଂରାଜୀପଢ଼ାଇବାକୁ ଡରୁଥିଲେ କାହିଁକି ?

# ପଶ୍ଚିମ ଆଫ୍ରିକାର ଟିକି ଝିଅଟି

ପଶ୍ଚିମ ଆଫ୍ରିକାର ଜଙ୍ଗଲ ଦେଶରେ ଗାଁଆ । ଗାଁଆ ମୁଣ୍ଡେ ଢିବିଗୁ । ତା ପରେ ବଣ । ଗାଁଆଁରୁ ବଣ ବଟିଆକୁ ବାଟ ପଡ଼ିଛି । ସେ ବାଟ ସଡ଼କ ନୁହେଁ, କି ଶଗଡ଼ ଗୁଳା ନୁହେଁ; ଏକପଦା ବାଟ । ପାଦ ପଡ଼ ପଡ଼ ଘାସ ଛିଡ଼ି ଯାଇ ସମାନ କାଟି ଦେଲା ପରି ହୋଇଛି । ବାଲିକାର ମାଆ ସବୁ ଦିନ ସେହି ବାଟେ ବଣ ବଟିଆକୁ ଯାଏ । ଖାଲି ଝଡ଼ ବରଷା ଦିନ ଯାଇପାରେନାହିଁ । ଗାଁର ଆଉ କେତେ ମାଇପେ ଯାଆନ୍ତି । ଗଲାବେଳେ ସମସ୍ତେ ହାତରେ ହାଣ୍ଡି କୋଡ଼ି ଓ ପିଠିରେ ଟୋକେଇ ଧରି ଥାଆନ୍ତି । ଆସିଲା ବେଳକୁ ଟୋକେଇଏ ଲେଖାଏ କାସାଭା ଧରି ଫେରନ୍ତି । ଏହି କାସାଭା କନ୍ଦମୂଳ ପରି । ଏହା ଗୋଟିଏ ଗଛର ଚେର; ବଡ଼ ମିଠା । ଓଡ଼ିଆରେ ଏହାକୁ କହନ୍ତି, 'ସକର କନ୍ଦ', ଦକ୍ଷିଣରେ କହନ୍ତି, 'ଟେପିଓକା' । ଏହାକୁ ପାଳୁଅ ପରି ଗୁଣ୍ଡ କଲେ ଆରାରୁଟ ହୁଏ । କାସାଭା ସଙ୍ଗେ ଟୋକେଇରେ କଦଳୀ ଥାଏ; ମକା ବି ଥାଏ ।

ଦିନେ ଦିନ ଗଡ଼ିଗଲାଣି । ବାଲିକା ମା, ଟିକି ଝିଅ ମେଞ୍ଜିଟିକୁ ଘେନି ଘରକୁ ଫେରିଲା । ମେଞ୍ଜିଟି ବାଟରେ ଡେଇଁ ଡେଇଁ ଖେଳି ଖେଳି ଆସୁଥାଏ, କେତେ କଥା କହୁଥାଏ, ମାଆକୁ କେତେ କଥା ପଚାରୁଥାଏ । ବାଟରେ ମେଞ୍ଜି ଲୁଚି ଯାଉଥାଏ । ମାଆ ବି ପିଲା ସଙ୍ଗେ ଖେଳିବାକୁ କହେ, "ମୋ ମେଞ୍ଜିଟି କୁଆଡେ ବାଟ ହୋଇଗଲା ଲୋ ! କୁଆଡେ ଗଲୁ ? କେଉଁଠି ଖୋଜିବି ?" ମେଞ୍ଜି ଠୋ ଠୋ ହସି ହସି ଡେଇଁ ପଡ଼େ ।

ବାଟରେ ଖଣ୍ଡେ ବଣ ପଡ଼ିଲା । ବଣ ପାଖ ହେଲାରୁ ମେଞ୍ଜିର ଖେଳ ସରିଗଲା । ମାଆଠୁ କାଖ ହୋଇ ଚଢ଼ି ସେ ମାଆ ଦେହରେ

ଲାଗିଗଲା । ଗଛ ଗହଳରେ ଏବେ ଆଉ ବାଟରେ ଖସ ପଡୁନାହିଁ । ମେଞ୍ଜି କହିଲା, "ମାଆ, ତୋ ସଙ୍ଗେ ମତେ ଡର ମାଡୁ ନାହିଁ। ଏକା ହୋଇ ମୁଁ ଜଣେ ଏଠାକୁ କେବେ ଆସନ୍ତି ?" ମାଆ ମେଞ୍ଜି ମୁହଁକୁ ଚାହିଁଲା, ହସି ହସି କହିଲା, "ମୋ ପିଲାର କେଡ଼େ ଦମ୍ଭ । ଏବେ ତ ମୁଁ ତ ମୋ ଡଉଣି ଦେଖା, ଅନ୍ଧକାରେ ସିମେଇବ ନାହିଁ ।" ମେଞ୍ଜି ମୁହଁ ଟିକିଏ ଶୁଖିଗଲା । ମାଆ ପୁଣି କହିଲା, ବଡ଼ ହେଲେ ଦମ୍ଭ ବଢ଼ିଯିବ ଯେ ।"





ବଣ ସରିଲା ବେଳକୁ ଦୋବାଟି । ଡାହାଣି ପଟେ ବାଟଟି ଘର ଆଡ଼କୁ । ବାଆଁ ପାଖ ବାଟଟି ପୁଣି ବଣ ବୁଦା ଭିତରକୁ । ସେଆଡ଼କୁ ସେ ଆଡ଼କୁ ପୁଣି ବଡ଼ ବଣ । ମେଞ୍ଜି ମନେ ମନେ ଭାବି ପାଖ ବାଟଟି କୁଆଡ଼େ ଗଲେ କୁଆଡ଼େ ପଡ଼ୁଛି । ସେବାଟେ ଗଲେ କୁଆଡ଼େ ଲାଗେ, ମେଞ୍ଜି ତା ଜାଣେ ନାହିଁ । ମେଞ୍ଜି ଖାଲି ଜାଣେ, ତା ବାପ ଜନ୍ତୁ ମାରି ଗଲାବେଳେ ସେ ବାଟେ ଯାଏ । ଥରେ ମେଞ୍ଜିର ଭାଇ ବାଲୁକା, ଗାଆଁର ଅଉ କେତେ ପିଲାଙ୍କ ସାଙ୍ଗେ ସେଇବାଟେ

ଯାଇଛନ୍ତି । ମେଞ୍ଜି ଶୁଣିଛି, ସେମାନେ ସେହି ବାଟେ ସମୁଦ୍ରକୂଳ ସହରକୁ ଯାଇଛନ୍ତି । ସେହି ସହରରେ ସେମାନେ ସ୍କୁଲରେ ପଢ଼ନ୍ତି ।

ଏବେ ବାଟକୁ ଦେଖି, ଭାଇ କଥା ମେଞ୍ଜିର ମନେ ପଡ଼ିଲା । 'ଭାଇ' ବୋଇଲେ ମେଞ୍ଜି ଛୋଟ କୁଣ୍ଢେଇ ମୋଟ ହୋଇଯାଏ । ସେ ମାଆକୁ ପଚାରିଲା, "ମାଆ, ବାଲୁଙ୍ଗା ଭାଇ କେଉଁ ଦିନ ଘରକୁ ଆସିବେ ?" ମାଆ କହିଲା, "ଏ ଋତୁ ସାରି ସେ ଯାଇଛି ।" ମେଞ୍ଜି ତା ହାତରେ ଧରିଥିବା କଦଳୀ ଗଛ ଗୋଟିଏ ଗୋଟାଇ-ଦେଇ ଆଙ୍ଗୁଠିରେ ଗଣିଲା; ମନେ ମନେ କହିଲା, 'ଋତୁ ଆସିବ, ପୁଣି ଯିବ; ପୁଣି ଆସିବ, ପୁଣି ଯିବ । ପୁଣି ନୂଆ ଋତୁ ଫେରିଲେ ବାଲୁଙ୍ଗା ଆସିବ । ବାଲୁଙ୍ଗା ଧାନ ଗଲେ ଆସିବ ବୋଲି କହୁଥିଲା । ଧାନ ଆସିଲେ ବର୍ଷା ଆରମ୍ଭରେ ଲାଗିବ ।" ଗଣି ଗଣି ବର୍ଷର ବର୍ଷ ସେ ମେଞ୍ଜିକି ଶୁଣି କହିଲା, "ଭାଇ ଏବେ ଆସିବ ।"

ଏବେ ମାଆ ଝିଅ ଦୁହେଁ ଘର ବାଟ ଧରିଲେ । ମେଞ୍ଜି ମାଆ କାଖରୁ ଡେଇଁ ପଡ଼ିଲା । ମନ ଖୁସିରେ ଗୀତ ଗାଇ ଗାଇ ଗାଆଁ ଆଡ଼କୁ ଧାଇଁଲେ ଦଉଡ଼ି ଦଉଡ଼ି ଗଲା—

ସମୁଦ୍ର କୂଳେ ବଡ଼ ସହର
ପାଠ ତ ପଢ଼ୁଛି ଭାଇଟି ମୋର ।
ନୂଆ ଜହ୍ନ ଯେବେ ଆସିବ ଉଇଁ,
ଘରକୁ ଆସିବ ବାଲୁଙ୍ଗା ଭାଇ ।

ପ୍ରଶ୍ନ

୧ । ମେଞ୍ଜିର ମାଆ ଜାତ ବଣକୁ କାହିଁକି ଯାଏ ? ତା ସାଙ୍ଗେ କଅଣ ?
ମେଞ୍ଜି ବଣରୁ ଆସିଲାବେଳେ ମା ସାଙ୍ଗେ ବାହାର ହେଲେ ?

୨ । ଶଗଡ଼ଗୁଳା, ଏକପୋ ବାଟ, ବଣା ହୋଇଗଲା, ଦୋବାଟ—
ଏଥିରୁ କଅଣ ବୁଝିଲ ?

# ପାକିସ୍ତାନ କଥା

ଆମ୍ଭ ଦେଶକୁ କହନ୍ତି ଭାରତବର୍ଷ । ଏବେ କହୁଥିଲେ ଇଣ୍ଡିଆ । ପୁଣି ଅଇଂରେଜ ନାମ କରି ଦେଲା, ଇଣ୍ଡିଆ ବା ଭାରତ । ପୂର୍ବେ ଏହି ଭାରତ ଲମ୍ବାରେ ଥିଲା, ପୂର୍ବରେ ଆସାମ ଠାରୁ ପଶ୍ଚିମରେ ଏବଂ ଅଫଗାନିସ୍ତାନର ଶେଷ ଯାଏ । ଶହେ ବର୍ଷ ହେଲା ଆଫଗାନିସ୍ତାନ ଅଲଗା ହୋଇ ଯାଇଛି । କିନ୍ତୁ ଅଫଗାନିସ୍ତାନ ଲୋକଙ୍କ ସଙ୍ଗେ ଆମର ଖୁବ ଭାବ ଅଛି ।

ଅଫଗାନିସ୍ତାନ ଅଲଗା ହୋଇଗଲେ ପରେ ଯେଉଁ ଭାରତ ଥିଲା, ସେଥିରେ ଏଣେ ପୂର୍ବ ବଙ୍ଗ ଓ ତେଣେ ପଶ୍ଚିମ ପଞ୍ଜାବ, ସିନ୍ଧୁ ଓ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ବେଶି ମୁସଲମାନ ଥିଲେ । ଭାରତ, ଇଂରେଜଙ୍କ ଅଧୀନ ଥିଲା । ଏବେ ଭାରତ ସ୍ୱାଧୀନ ହେଲା ବେଳକୁ ସେଇ ମୁସଲମାନମାନେ କହିଲେ, ତାଙ୍କ ସେ ଦେଶଖଣ୍ଡମାନଙ୍କରେ ସେ ଅଲଗା ହେବେ । ସେଇ ଅଲଗା ଦେଶଟି ଏବେ ପାକିସ୍ତାନ । ସବୁ ପାକିସ୍ତାନଟି ଏକାଠି ଖଣ୍ଡିଏ ଦେଶ ନୁହେଁ । ସେଥିରୁ ଖଣ୍ଡେ ହେଉଛି ଭାରତର ପଶ୍ଚିମକୁ, ଖଣ୍ଡେ ପୂର୍ବକୁ । ଏଇ ଦୁଇ ଖଣ୍ଡ ପାଇ ଛାଡ଼ି ଏବେ ଆମ ଭାରତ ।

ଯେଝା ଦେଶ ତାଙ୍କ ଖୁସି ଅନୁସାରେ ସେ କରିବେ । ଭାରତ ଭିତରେ ହିନ୍ଦୁ ମୁସଲମାନଙ୍କ ଭିତରେ କେତେବେଳେ ଆଗେ ବିବାଦ ହେଉଥିଲା । ତା ଆଉ ହେବନାହିଁ ବୋଲି ଏହା କରାଗଲା । ଏଣିକି ଆମେ ତାଙ୍କ ମନ ନେଇ ତାଙ୍କର ଆପଣା ଲୋକ ପରି ରହିବା । ସେ ଆମ ମନ ନେଇ ଆମର ଆପଣା ଲୋକ ପରି ହେବେ । ଆଉ କୌଣସି ବିବାଦ ରହିବ ନାହିଁ । ଆମ ଦେଶରେ କେତେକେତେ ଜିନିଷ ଭଲ ଆମଦାନୀ ହୁଏ । ସେମାନେ ତାହା ଆମଠାରୁ କିଣି

ନେବେ । ସିମିତ ପାକିସ୍ତାନରେ ଯେତେ ଜିନିଷ ବେଶି ମିଳେ, ଆମେ ସେ ପଦାର୍ଥ ତାଙ୍କଠାରୁ କିଣି ଆଣିବା । ହିନ୍ଦୁ ମୁସଲମାନମାନଙ୍କ ଭିତରେ ମନର ମେଳ ହେଲେ । ଏ ସବୁ କାରବାର ସୁବିଧାରେ ଚାଲିବ ।

## ପ୍ରଶ୍ନ

୧ । ମୁସଲମାନମାନେ କାହିଁକି ସ୍ୱତନ୍ତ୍ର ରାଜ୍ୟ ନେଇଥିଲେ ?
୨ । କେଉଁ କେଉଁ ପ୍ରଦେଶକୁ ନେଇ ପାକିସ୍ତାନ ଗଠିତ ହେଲା ?
୩ । ଭାବ ଅଛି, ଦେଖା, ବିବାଦ, ମନନେଇ ଆମଦାନି, ସୁବିଧାରେ —ଲଗାଇ ବାକ୍ୟ ରଚନା କର ।

---

## ଜହ୍ନମାମୁ

କୁଆଁର ପୁନିଅଁ ଜହ୍ନ ଦେଖେ ସୁନ୍ଦର
ମଜା ରୁପା ଥାଳି ଜହ୍ନମାମୁଟି ମୋର,
ନାହିଁ ଝଡ଼, ଘଡଘଡ଼ି,
ନାହିଁ ଅଳି ନଈବଢ଼ି,
ପଡ଼ିଅଛି ବାଟଘାଟେ, ପାଣି ନିର୍ମଳ
କୁଆଁର ପୁନିଅଁ ଜହ୍ନ ଦେଖେ ସୁନ୍ଦର ।
ଆସଇ ସେ ଜହ୍ନମାମୁ ମାସକୁ ମାସ,
କାର୍ତ୍ତିକ ଶୀତରେ ଦେଖେ ଶରଦ ହସ,
ଆସଇ ସେ ମଙ୍ଗୁଳିରେ,
ଆସଇ ପୁଷ ଶିଶିରେ,
ମାଘ ଜାଡ ସହି ଆସେ କରି ସାହସ,
ହସ କୁହୁଡିରେ କାନ୍ଦ ହୁଏ ନିରସ ।

ଫଗୁଣେ ବସନ୍ତ ବାହେ, ଫୁଟଇ ଫୁଲ,
ଗ୍ରାମେ ଗ୍ରାମେ ଫଗୁ ଖେଳ, ଝଣା, ଶାବର,
ଜହ୍ନମାମୁ ଗୁହ୍ନି ଥାଏ,
ଚଉଦେ ଷରଧା ଦେଖାଏ,
ନଏ ସେ ପୂର୍ଣ୍ଣିରେ ଠାକୁ, ଦୋଳ ଗହଳ;
ଅବୀର ଉଡ଼ରେ ଖାଲି ଉଠଇ ଗୋଳ ।

ବସନ୍ତ ଭୁଲଇ ରଖେ ଚହଳ ସାରା,
ବଇଶାଖ, ଜେଠରୁ ହୁଏ ନିଧୂମ ଖରା,
ଶୁଖଇ ନଈ ପୋଖରୀ,
ଭୂଇଁରୁ ଉଠଇ ଧୂଳି,
ଆକାଶରେ ଜହ୍ନମାମୁଁ ଦିଶେ ଝୋଟିଆ,
ସମସ୍ତେ ଲୋଡନ୍ତି ଖାଲି ପାଣି ଅସ୍ରା ।

ଅଷାଢ଼ ଶ୍ରାବଣ ଭାଦ୍ର ବରଷା କାଳ,
ଖେଳୁଅ ମାସକୁ ମେଘ ଯାଏ ବହଳି,
ମେଘ ଆଉ ପାଖେ ରହୁ
ଜହ୍ନମାମୁଁ ଥାଏ ଗୁହ୍ନି,
ଅଶ୍ୱିନକୁ ହୁଏ ସଫା ଶରଦକାଳ
କୁଆଁର ପୁନେଇଁ ଜହ୍ନମାମୁଁ ସୁନ୍ଦର ।

## ପ୍ରଶ୍ନ

୧ । ବର୍ଷ ଭିତରେ ଜହ୍ନମାମୁ କେଉଁ ଦିନ ଭାରି ସୁନ୍ଦର ଦିଶେ ।
ମାସ ଭିତରେ ଜହ୍ନମାମୁ କେଉଁ ଦିନ ପୂରା ଗୋଲ ହୁଏ ଓ
କେଉଁ ଦିନ ଆଦୌ ଦେଖାଯାଏ ନାହିଁ ?

୨ । ଫଗୁଣ ମାସରେ କି ଋତୁ ହୁଏ ? ତୁମ୍ଭେମାନେ ସେ ଋତୁର ସମୟରେ କଅଣ କର ?

୩ । ବର୍ଷକର ବାରଟି ମାସର ନାମ ଓଲଟ-ପାଲଟ ହୋଇ ରଖା ଯାଇଛି । ତାହା ପଛକୁ କଏ-ଆଗେ, କହ ।

ବୈଶାଖ, ଆଶ୍ୱିନ, ଭାଦ୍ର, ଶ୍ରାବଣ, କାର୍ତ୍ତିକ, ଚୈତ୍ର, ମାଘ ଜ୍ୟେଷ୍ଠ, ଫାଲ୍‌ଗୁନ, ପୌଷ, ମାର୍ଗଶିର, ଆଷାଢ଼ ।

୪ । 'ମକା ରୂପା ଥାଳୀ ଜହ୍ନମାମୁଁଟି ମୋର'—ଏହାର ଅର୍ଥ ବୁଝାଅ ।

୫ । ବାଟଘାଟ, ନବୀନ, ଫଗୁ, ସାଗ ନିଥିବ, ହୋଡଗ, ଅସବ—ଲଗାଇ ବାକ୍ୟମାନ ରଚନା କର ।

---

## କାଶିଆ ଓ କପିଳା

ଏ ଅନେକ ଶହ ବର୍ଷ ତଳର କଥା । କାଶିଆ, କପିଳା ବୋଲି ଯୋଡ଼ାଏ ପିଲା ଭାରି ସାଙ୍ଗହୋଇ ଥାଆନ୍ତି । କପିଳାଟି ଗଉଡ଼ ପିଲା, କାଶିଆଟି ବ୍ରାହ୍ମଣ । ସୁବର୍ଣ୍ଣରେଖା ନଦୀ ପାଖରେ ଗୋଟିଏ ଗାଆଁରେ ତାଙ୍କ ଘର ଥିଲା ବୋଲି ଲୋକେ କହନ୍ତି ।

କପିଳା ଗାଈ ଜଗିଯାଏ । କାଶିଆ କେବେ କେବେ ସେହି ଗାଈଜଗା ପଡ଼ିଆକୁ ଯାଏ । ଗାଈ ଚରୁ ଥାଆନ୍ତି; କାଶିଆ କପିଳା ଦୁହେଁ ଛାଇରେ ଏ ଘଡ଼ି ବସି ଖେଳନ୍ତି । ଖରା ଢଳିଗଲେ କାଶିଆ ଘରକୁ ଆସେ । କପିଳ ସଞ୍ଜବେଳକୁ ଗାଈ ନେଇ ଫେରେ ।

ଦିନେ କପିଳା ଗାଈ ନେଇ ଜଙ୍ଗଲ ଦଣ୍ଡା ଆଡ଼କୁ ଯାଇଛି, ଖାଇପିଇ ସାରି କାଶିଆ ତାକୁ ଖୋଜା ଖୋଜି ସେହି ଆଡ଼କୁ ଗଲା । ଭରଭରିଆ ଖରାବେଳ । କାଶିଆ ଦୂରରୁ ଦେଖିଲା, ଦଣ୍ଡାରେ ଗାଈ

ଟଗାରୁ ଗୁଡ଼ିକ ଚରୁଛନ୍ତି । କେତେଗାଈ ଗଛମୂଳ ଦେଖି ଶୋଇଛନ୍ତି । କିନ୍ତୁ କପିଳା କାହିଁ ଦେଖୁ ନାହିଁ ।

ଟିକଏ ପାଖକୁ ଆସି କାଣ୍ଡିଆ ଯାହା ଦେଖିଲା, ସେଥିରେ ତା ଆଖି ବୁଜି ହୋଇଗଲା । ସେ ଦେଖିଲା, ଦଣ୍ଡାପଣ୍ଡି ବରଗଛ ମୂଳେ କପିଳା ବେକ ଟେକି ଆପଣା ଗୋଡ ଉପରେ ଥୋଇ ଦେଇ ନିଘୋଡ଼



ନିଦରେ ଶୋଇ ପଡ଼ିଛି । ଗୋଟିଏ ନାଗସାପ କାହୁଁ ଆସି ତା ମୁଣ୍ଡ ଉପରେ ଫଣା ଟେକି ଚାହିଁ ରହିଛି ।

କାଶିଆ ତାହାଦେଖି ଖଣ୍ଡେ ଦୂରେ କାଠପରି ଟିଅ ହୋଇଗଲା । ତାକୁ ଜଣାଗଲା ସାପଟି ଏହିକ୍ଷଣି କପିଳା ମୁଣ୍ଡରେ ଚୋଟ ମାରିଦେବ । ତା ଗୋଡ଼ ହାତ ଥରିଲା । ସେ କଅଣ କରିବ କିଛି ଠିକ୍ ପାଇଲା ନାହିଁ । ଖାଲି ବାକଲରେ ମନେ ମନେ ଜଗନ୍ନାଥଙ୍କୁ ଡାକିଲା ।

ଦଇବଙ୍କୁ, କେତେବେଳ ଉତ୍ତାରୁ ସାପଟା ଉଠି ନିଜ ଭଳି ଧୀରେ ଧୀରେ ଯାଇ ବରଗଛମୂଳ ଦୁର୍ଗା ଗାତରେ ପଶିଗଲା । ଏତେବେଳକୁ କାଶିଅ ଦେହରୁ ଶୋଷାଣ୍ଡାଳ ଭାସି ଗଲାଣି । ସାପ ତାହାର ଗଲାରୁ କାଶିଆକୁ ଦମ୍ ଲାଗିଲା, ଖୁସି ବି ଲାଗିଲା ।

କାଶିଆ ଶୁଣିଥିଲା, ମୁଣ୍ଡଉପରେ ନାଗସାପ ଫଣା ଟେକିଲେ ଭାରି ଶୁଭ ହୁଏ । ଏହା ରାଜା ହେବାର ଲକ୍ଷଣ । ଏବେ ସେ ମାଇଁ କପିଳାକୁ ଉଠାଇ ସାପ କଥା କହି ସାରି କହିଲା, "କପିଳା, ତୁ ଦିନେ ହେଲେ ରାଜା ହେବୁ ।" କପିଳା ହସି ହସି କହିଲା, "ମୁଁ ରାଜା ହେଲେ, ତୋତେ ମନ୍ତ୍ରୀଟାଏ କରିବି ।"

କେତେ ଦିନେକେ କପିଳା ଯାଇ ରାଜା ଘରେ ଚାକିରି କଲା । ରାଜା ଦେଖିଲେ, କପିଳା ବଡ଼ ବୁଦ୍ଧିମାନ୍ ଓ ସାଧୁ । କ୍ରମେ ତାକୁ ସେ ରାଜକାର୍ଯ୍ୟ ବୁଝିବାକୁ ଦେଲେ । ଏହିପରି ବୁଝି ବୁଝି, ସେ ରାଜାଙ୍କ ଘର କାର୍ଯ୍ୟ ବୁଝିବାରେ ସବା ବଡ଼ ହେଲା । ସେ ହେଲା, ରାଜାଙ୍କ ପାତ୍ର । ପୁଣି ରାଜକାର୍ଯ୍ୟ ବୁଝିବାରେ କ୍ରମେ ସେ ହେଲା, ବଡ଼ ସେନାପତି ।

ରାଜାଙ୍କର ପୁଅ ନଥିଲା । ସେହି ରାଜାଙ୍କ ନାମ ମନ୍ତ୍ରଭାନୁ ଦେବ । ସେ ମଲେ । ଲୋକେ କହନ୍ତି ସେକାଳେ ରାଜା ଏପରି ଅପୁତ୍ରିକ ହୋଇ ମଲେ, ରାଜାଙ୍କ ପାଟହାତୀ ସୁନା କଳସରେ ପାଣି ନେଇ ବୁଲେ । ବୁଲି ବୁଲି ଯାହା ଉପରେ ସେହି ସୁନା କଳସ,

ଆଳି ଦଏ, ସେହୁ ହୁଏ ରଜା । ସେ କଥା ମାହା ହେଉ, ଓଡ଼ିଶାରେ ପ୍ରଥା ଥିଲା ଯେ, ରଜା ପୁଅ ନ ଥାଇ ମଲେ, ପାଟ, ମନ୍ତ୍ରୀ, ସେନାପତି, ରାଜଗୁରୁ ପ୍ରଭୃତି ସମସ୍ତେ ବସି ଯୋଗ୍ୟ ଲୋକ ଜଣକୁ ବାଛି ରଜା କରନ୍ତି । ଅଭିଷେକ ପୂର୍ବରୁ ରଜାଙ୍କ ପାଟହାତୀ ଥୋଡ଼ ପାହାନ୍ତରେ ସୁନା କଳସରେ ପାଣି ଧରି ତାହାର ମୁଣ୍ଡରେ ଢାଳେ ।

ମତ୍ତଭାନୁ ଦେବଙ୍କ ଅନ୍ତେ କପିଳ ରଜା ହେବା ପାଇଁ ଠିଆ ହେଲେ । ତାଙ୍କ ମୁଣ୍ଡରେ ହାତୀ ସୁନା କଳସ ଢାଳିଲା । ସେ ହେଲେ ଓଡ଼ିଶାର ରଜା କପିଳେନ୍ଦ୍ର ଦେବ । ସେ ଖୁବ ଭଲ ଟଣା ହୋଇଥିଲେ । ସେ ଓଡ଼ିଶା ସାମ୍ରାଜ୍ୟର ସମ୍ରାଟ ହୋଇଥିଲେ । ତାଙ୍କ ରାଜତ୍ୱରେ ଓଡ଼ିଶାର ଧନ, ଧର୍ମ, ବିଦ୍ୟା ଖୁବ ବଢିଥିଲା । କବି ସୂଦ୍ର ମୁନି ଶାରଳା ଦାସ ସେହି ସମୟରେ ଓଡ଼ିଆ ମହାଭାରତ ଲେଖିଥିଲେ । ସେ ସବୁ କଥା ଇତିହାସ ପଢିଲେ ଜାଣିବ ।

ଏବେ କାଶିଆକୁ ମନ୍ତ୍ରୀ କରିବା କଥା କେଣେ ହେଲା ? କପିଳେନ୍ଦ୍ର ଦେବ ରାଜକାର୍ଯ୍ୟରେ ଭୋଳ । କାଶୀନାଥ ଦେଖା କରିବାକୁ ବ୍ୟାକୁଳ । ଶେଷରେ ବଡ କଷ୍ଟରେ ଯୁଝି ନଅରଦାଣ୍ଡରେ ଦେଖା ହେଲା । ଦୁହେଁ ଭେଟାଭେଟି ହେଲେ । କଥାଟି ରଜାଙ୍କ ମନେ ପଡ଼ିଲା ; ମାତ୍ର ରଜା କହିଲେ, "ହଉ; ପରେ ଆସିବ ।" କାଶିନାଥ ତୁରନ୍ତ କହିଲେ, "ଆଜ କାଶିଆ କପିଳାର କି ଭେଟ ।" ଅର୍ଥାତ୍ ତୁମ୍ଭେ ମହାରଜା, ତୁମ୍ଭର କେତେ କାର୍ଯ୍ୟ, କେତେ କର୍ମଗୃହ । ତୁମ୍ଭ ସଙ୍ଗେ ମୋର ଦେଖା ହେବା ସହଜ ନୁହେଁ ।

କପିଳେନ୍ଦ୍ର ଦେବ କାଶୀନାଥଙ୍କ କଥା ଅନୁସାରେ ସଙ୍ଗେ ସଙ୍ଗେ ତାଙ୍କୁ ଏକ ଗାଁ ଦାନ ଦେଲେ । ସେହି ଗାଁର ନାମ କାଶିଆ ଚନ୍ଦ୍ରକଟକୋଇ । ପୁରୀ ଜିଲ୍ଲାର ଭାର୍ଗବୀ କୂଳ ବଲଙ୍ଗା ଥାନରୁ ଏହା ପ୍ରାୟ ଦୁଇକୋଶ ଦୂର ।

ପ୍ରଶ୍ନ

୧ । କପିଳା ରଜା ହେବ ବୋଲି କାହ୍ନ‌ଙ୍କ କହିଲ । ରାଜାଙ୍କର ପୁଅ ନ ଥିଲେ ପୂର୍ବକାଳରେ କିଏ ରଜା କପରି ଠିକ୍ ହେଉଥିଲେ ? କାଶିଆ ଦେବବୋଇ କେଉଁଠି ? ତାର ଏପରି ନାଆଁ କାହିଁକି ହୋଇଛି ?

୨ । ଉଦ୍ଗ୍ରୀବତା, ଚାଟିକଲ୍, ସୁନାବଳୟ, ରଙ୍ଗୁଚ୍ଛ—ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

---

ହୀରା

ହୀରା କାଚଠାରୁ ବଡ଼ଶେ । ମାନ ଏହା ଅନ୍ଧାରରେ ଦୀପ ଜଳିଲା ପରି ଜକ୍ ଜକ୍ ହୁଏ । କେତେ ସମୁଦ୍ର ମାଛ ଏହିପରି ଜକ୍ ଜକ୍ ହୁଅନ୍ତି । ଅନ୍ଧାର ରାତିରେ ସମୁଦ୍ର ଲହରୀ ଭାଙ୍ଗି ଯେଉଁ ଫେଣ ହୁଏ, ତା ବି ଏହିପରି ଜକ୍ ଜକ୍ ହୁଏ । ସମୁଦ୍ର କୂଳ ଓଦା ବାଲିକି ଅନ୍ଧାର ରାତିରେ ଗୋଡ଼ରେ ଡାହି ଛାଟି ବୁଣି ଦେଲେ ନିଆଁ ଗୁଣ୍ଡା ବୁଣି ହୋଇଗଲା ପରି ବଡ଼ ସୁନ୍ଦର ଦେଖାଯାଏ । ପିଲାଏ ଏହିପରି ରାତିରେ ସମୁଦ୍ର କୂଳରେ ଖେଳନ୍ତି । ପୁରୀ, ଗୋପାଳପୁର, କୋଣାର୍କ ପ୍ରଭୃତି ଜାଗାକୁ ଗଲେ ଅନ୍ଧାରପକ୍ଷ ରାତିରେ ଏ ଶୋଭା ଦେଖି ପାରିବ ।

ପୁରୀ ପାଖ ଗାଁ ଲୋକେ ସମୁଦ୍ର ମାଛ ଗାମୁଛାରେ ବାନ୍ଧି ଓହଳାଇ ରାତିରେ ବନା ଲଣ୍ଠନରେ ଏଡ଼ିକରେ ଯାଆନ୍ତି । ମାଛ ଜକ୍ ଜକ୍ ହୋଇବାରେ ତାଙ୍କ ଗୋଡ଼ତଳ ପକଡ଼ାଏ ଜାଗା ଆଲୋକ ହୋଇଥାଏ ।

ହୀରା ଏହିପରି ଜକ୍ ଜକ୍ ଦାଶେ । ତା ନହେଲେ ସେ ନକଲି; ଅସଲ ହୀରା ନୁହେଁ । ଏ ହୀରା କହ୍ନୁ ମାଲା, ମାଣିକ ପରି

ପଥର ନୁହେଁ କମ୍ବା ମୋତି ପରି ସମୁଦ୍ର ସାମୁକା ଭିତରେ ନ ଥାଏ । ହୀରା ହେଉଛି ଖାଣ୍ଟି ଅଙ୍ଗାର । ନିଆଁ ଜାଳିଲେ ମାଟିରେ ଚାପ ହୋଇ ଅଙ୍ଗାର ଏପରି ହୋଇଯାଏ ଏହା ଖଣିରୁ ବାହାରେ । ବଣିଆ ଭାଟିରେ ଅମ୍ଳଜାନରେ ଫୁଙ୍କିଦେଲେ ହୀରା ବରାବର ପୋଡ଼ି ଉଡ଼ିଯିବ । ପାଉଁଶ ବି ରହିବ ନାହିଁ । ଅଙ୍ଗାରରେ ମଇଳା ଥିଲେ ସିନା ପାଉଁଶ ରହେ ।

କୋହିନୂର—

ଏହା ଗୋଟିଏ ବଡ଼ ହୀରା । ଏତେ ସୁନ୍ଦର ହୀରା ପୃଥିବୀରେ ଆଉ ନାହିଁ । ଏହା ବହୁଭଙ୍ଗୀ ହୀରା । ପ୍ରସିଦ୍ଧ ହୀରା ସବୁ ହୀରା ଯାକରେ ଭଲ । ଏଥିରେ ଫାଟ ଗଣ୍ଠି ଦାଗ, ମଇଳା ପ୍ରଭୃତି କିଛି ନ ଥାଏ । ରାତିରେ ଅନ୍ଧାରରେ ଦୀପ ପରି ଏହା ଝକ୍ ଝକ୍ ଜଳେ ।

ଇଂଲଣ୍ଡରେ ଏବେ ଯେଉଁ ରାଜା ଅଛନ୍ତି, ତାଙ୍କ ବାପାଙ୍କ ଜେଜେମାଆ ହେଉଛନ୍ତି ରାଣୀ ଭିକ୍ଟୋରିଆ । ତାଙ୍କ ମୁକୁଟରେ ଏହା ଥିଲା । ଏବେ ସେହି ରାଜମୁକୁଟରେ ଏହା ସେହିପରି ରହିଛି । ଏହାର ମୂଲ୍ୟ ଗୁଡ଼ିକୋଟି ଟଙ୍କା ହେବ ।

ଯେଉଁ ହୀରାଟି ଏହା ଭାରତବର୍ଷର । ଆଗେ ଏହି ଭାରତରେ ହୀରା ଖଣିମାନ ଥିଲା । ଆମ ସମ୍ବଲପୁରରେ ବି ହୀରା ମିଳୁଥିଲା । ସେଥିପାଇଁ ସମ୍ବଲପୁରର ପୁରୁଣା ନାମ, 'ହୀରାଖଣ୍ଡ' । ଗୋଲକୁଣ୍ଡା ରାଜ୍ୟରେ ବହୁତ ଭଲ ଭଲ ହୀରା ମିଳୁଥିଲା ।

ଏବେ ଆଉ ଏ ଦେଶରେ ହୀରା ମିଳୁ ନାହିଁ । ଖଣି ସରି ଗଲାଣି । ଭଲ ଭଲ ହୀରା ସବୁ ବିଦେଶକୁ ମଧ୍ୟ ଚାଲି ଯାଇଛି ।

ଏହି କୋହିନୂର ପ୍ରାୟ ତିନି ଶହ ବର୍ଷ ତଳେ ଗୋଲକୁଣ୍ଡାରେ ମିଳିଥିଲା । ମୀରଜୁମଲା ବୋଲି ସେତେବେଳେ

ଗୋଲକୁଣ୍ଡା ରାଜାଙ୍କର ଜଣେ ମନ୍ତ୍ରୀ ଥିଲେ । ତାଙ୍କ ହାତରେ ଏହା ପଡ଼ିଲା । ପରେ ସେ ଏହାକୁ ଦିଲ୍ଲୀର ମୋଗଲ ବାଦସା ଆଉରଙ୍ଗଜେବଙ୍କୁ ଭେଟି ଦେଇଥିଲେ । ସେହି ଦିନଠାରୁ ଏହା ମୋଗଲ ବାଦସାହଙ୍କ ମୁକୁଟରେ ଶୋଭା ପାଉଥିଲା ।

କେତେ ବର୍ଷ ପରେ ନାଦୀରସାହ ନାମକ ପାରସ୍ୟ ଦେଶର ... ବାଦସାହଙ୍କୁ ଜିଣି କୋହିନୁରଟି ନେଇଗଲେ । ପରେ ତାହା କାବୁଲର ରାଜାଙ୍କ ହାତକୁ ଆସିଲା । ପଞ୍ଜାବର ଶିଖ ରାଜା ରଣଜିତ ସିଂହ କାବୁଲ ଜିଣି ତାହା ଆଣି ନିଜ ମୁକୁଟରେ ବସାଇଥିଲେ । ଇଂରେଜ ... ଯେତେବେଳେ ପଞ୍ଜାବ ହାତକଲେ, ସେତେବେଳେ ... କୋହିନୁରଟି ନିଜ ଇଂଲଣ୍ଡ ଦେଶର ରାଣୀ ଭିକ୍ଟୋରିଆଙ୍କ ପାଇଁ ... ସେଥିପାଇଁ ଭାରତବର୍ଷର ... ହୀରା କୋହିନୁର ଏବେ ଇଂଲଣ୍ଡରେ ।

ପ୍ରଶ୍ନ

୧ । ହୀରା ... ପଦାର୍ଥ ? ... କାହିଁରୁ ବାହାରେ ? କୋହିନୁର କିଏ ? ତାହା ବର୍ତ୍ତମାନ କେଉଁଠି ଅଛି ।

୨ । ମୁକୁଟ, ମଇଳା, ... ଝକ୍‌ଝକ୍, ... — ଏଗୁଡ଼ିକ ଲଗାଇ ଗୋଟିଏ ... ବାକ୍ୟ ଗଢ଼ ।

---

ଗୋପବନ୍ଧୁ

ଗୋପବନ୍ଧୁ ଦାସଙ୍କ ନାମ ଶୁଣିଥିବ । ସେ ଆମ ଓଡ଼ିଶାର ଜଣେ ମହାପୁରୁଷ ହୋଇ ଯାଇଥିଲେ । ଲୋକଙ୍କ ଦୁଃଖ ସେ ସହି ପାରୁ ନ ଥିଲେ । ବଢ଼ିରେ ଗାଁ ଗଣ୍ଡା ଭାସିଗଲେ ସେ ଭକ ମାଡ଼ି ଗୁହାଳ ... ଅଗ ନାଆରେ ... ଲୋକଙ୍କ ପାଖେ ପହଞ୍ଚି

